# ସମାଲୋଚନା ସମାରୋହ

ଲେଖକ—
ଅଧ୍ୟାପକ ସୀତାରାମ ମହାପାତ୍ର, ଏମ୍. ଏ., ପି ଏଚ୍. ଡି.
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର

ପ୍ରଥମ ପ୍ରକାଶ — ୧୯୭୧

ପ୍ରକାଶକ —
ବିନୟ ବୁକ୍ ଷ୍ଟୋର
ବ୍ରହ୍ମପୁର-୧ (ଗଞ୍ଜାମ)

ସାଦା ବନ୍ଧେଇ ମୂଲ୍ୟ — ଚାରି ଟଙ୍କା
ବନ୍ଧେଇ ମୂଲ୍ୟ — ପାଞ୍ଚ ଟଙ୍କା

# ସୂଚୀପତ୍ର

# ଉତ୍ସର୍ଗପତ୍ର

ପୂଜ୍ୟାସ୍ପଦ ମୋର ପିତୃଦେବ
ସ୍ୱର୍ଗତ ନରସିଂହ ନନ୍ଦରଥଷୋପ୍ତୀଙ୍କ
ଅମର ଆତ୍ମାର ମଙ୍ଗଳ ସ୍ମୃତି ଉଦ୍ଦେଶ୍ୟରେ
ଗଭୀର ଭକ୍ତିସହ ଅର୍ପିତ ।

— ଲେଖକ

# ଅଭିମତ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗ ଅଧ୍ୟାପକ ଶ୍ରୀ ସୀତାରାମ ମହାପାତ୍ରଙ୍କ ଲିଖିତ 'ସମାଲୋଚନା ସମାବେଶ' ଶୀର୍ଷକ ପ୍ରବନ୍ଧ ଗ୍ରନ୍ଥର ଅଧିକାଂଶ ପ୍ରବନ୍ଧ ପାଠ କରିଅଛି । ଏଥିରେ ପ୍ରକାଶିତ ଚଉଦଟି ପ୍ରବନ୍ଧ ମଧ୍ୟରୁ 'ଜୀବନ ଓ ସାହିତ୍ୟ', 'ରାଜନୀତି ଓ ସାହିତ୍ୟ', 'କ୍ଲାସିକ ଓ ରୋମାଣ୍ଟିକ', 'ପ୍ରତୀକବାଦ', 'ଟ୍ରେଜେଡ଼ି ଓ କମେଡ଼ି' ଏବଂ 'ହାସ୍ୟରସ' ଏହି ଛ'ଟି ପ୍ରବନ୍ଧ ପ୍ରଧାନତଃ ସାହିତ୍ୟର ସଂଜ୍ଞା ଓ ଉଦ୍ଦେଶ୍ୟ ସାହିତ୍ୟର ଉପସ୍ଥାପନାର ବା ପ୍ରକାଶର ବିଭିନ୍ନ ଭଙ୍ଗୀ ଏବଂ ସାହିତ୍ୟରେ ଆନନ୍ଦ ବିଷୟକୁ ଭିତ୍ତି କରି ରଚିତ । 'ଧର୍ମ ଓ ସାହିତ୍ୟ', 'ଉପନ୍ୟାସରେ ଚିନ୍ତାଧାରାର କ୍ରମବିବର୍ତ୍ତନ', 'ଆଧୁନିକ ଗଦ୍ୟ ସାହିତ୍ୟର ଅଭ୍ୟୁଦୟ', 'ଓଡ଼ିଆ ନାଟକର ନୂତନ ଆଭିମୁଖ୍ୟ', 'ଜୀବନୀ ସାହିତ୍ୟ' – ଏହି ପାଞ୍ଚଗୋଟି ସାହିତ୍ୟର ତତ୍ତତ୍ ବିଭାଗର ପୃଷ୍ଠଭୂମିରେ ଯଥାକ୍ରମେ ଓଡ଼ିଆ ଧର୍ମ-ସାହିତ୍ୟ, ଉପନ୍ୟାସ-ସାହିତ୍ୟ, ଗଦ୍ୟ-ସାହିତ୍ୟ, ନାଟ୍ୟ-ସାହିତ୍ୟ, ଜୀବନଚରିତ ସାହିତ୍ୟ ସମ୍ବନ୍ଧରେ ଲିଖିତ । ଅବଶିଷ୍ଟ ତିନୋଟି ପ୍ରବନ୍ଧ ('ଫୁଲଙ୍ଗ ଓ ଚନ୍ଦ୍ରଲାକୁମାରୀ', 'ଗୋପବନ୍ଧୁଙ୍କ ସାହିତ୍ୟରେ ସମାଜ-ଚେତନା' ଓ 'ଐତିହାସିକ ଉପନ୍ୟାସ ଅନ୍ନପୂର୍ଣ୍ଣା') ତିନି ଜଣ ବିଶିଷ୍ଟ ସାହିତ୍ୟିକଙ୍କ କୃତିକୁ ଅବଲମ୍ବନ କରି ଲିଖିତ ହୋଇଅଛି ।

ଦ୍ୱିତୀୟ ଶ୍ରେଣୀର ପ୍ରବନ୍ଧଗୁଡ଼ିକରୁ କେତେକର ନାମକରଣରେ ଲେଖକ ଇଂରାଜୀ ଶବ୍ଦ ପ୍ରୟୋଗ କରିଅଛନ୍ତି । ଯଥା - କ୍ଲାସିକ ଓ ରୋମାଣ୍ଟିକ୍, ଟ୍ରେଜେଡ଼ି ଓ କମେଡ଼ି । ଏ ଚାରୋଟି ଶବ୍ଦର ଓଡ଼ିଆ ଅନୁବାଦ ସର୍ବବାଦି-ସମ୍ମତ ନ ହୋଇଥିବାରୁ ବୋଧହୁଏ ଇଂରାଜୀ ନାମଗୁଡ଼ିକ ପାରିଭାଷିକ ଶବ୍ଦ ଭାବରେ ବ୍ୟବହାର କରିଅଛନ୍ତି । ଏଗୁଡ଼ିକର ଅନୁବାଦ ଯଥାକ୍ରମେ 'ଶ୍ରେଣିକ', 'ରୋମାଞ୍ଚିକ', ଦୁଃଖାନ୍ତକ' ଓ 'ସୁଖାନ୍ତକ' କରାଯାଇପାରେ । ଇଂରାଜୀ ସିମ୍ବୋଲିଜମ୍ (Symbolism)କୁ ସେ ପ୍ରତୀକବାଦ ବୋଲି ଅନୁବାଦ କରିଅଛନ୍ତି । 'ଦୁଃଖାନ୍ତକ' ସାହିତ୍ୟକୁ ଛାଡ଼ିଦେଲେ ଏ ବିଭିନ୍ନ ପ୍ରକାରର ସାହିତ୍ୟ ପ୍ରାଚୀନ ଆର୍ଯ୍ୟ ଭାରତୀୟ ସାହିତ୍ୟରେ ଏବଂ କେତେକ ପରିମାଣରେ ଅର୍ବାଚୀନତର ଓଡ଼ିଆ ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ । ପ୍ରତୀକବାଦ-ସାହିତ୍ୟ ବକ୍ରୋକ୍ତିବାଦ-ସାହିତ୍ୟର ବା ଧ୍ୱନିବାଦ-ସାହିତ୍ୟର ଗୋଟିଏ ଭେଦ ବୋଲି ଧରାଯାଇପାରେ । ଚର୍ଯ୍ୟାପଦର କେତେକ ପଦ ପ୍ରତୀକବାଦ ସାହିତ୍ୟର ନିଦର୍ଶନ ବୋଲି ଧରାଯାଇପାରେ । ଏ ପ୍ରସଙ୍ଗରେ ଭୁସୁକପାଦଙ୍କ ଚର୍ଯ୍ୟାର 'ହରିଣ-ଗୀତି' ଶୀର୍ଷକ ମୋର ଅନୁବାଦଟି ଅନୁସନ୍ଧେୟ । *

---

* "ବଣ ହରିଣ, ଏ ବନସ୍ତେ ବୁଲୁଅଛୁ କିସ ଲୋଡ଼ିଣ । ଚୌଦିଗେ ଶୁଭଇ ମାର ମାର ଶବଦ ଅଟଣା ମାଂସ ତା ଲଗି ଅଣେ ବିପଦ ।" … ଇତ୍ୟାଦି ।

ଜଗନ୍ନାଥ ଦାସଙ୍କ ଭାଗବତର ଷୋଡଶ ଅଧ୍ୟାୟରେ ଯଥା —

'ଦ୍ୱିଶିର ତ୍ରିଚରଣ ଭୁଜ । ଚତୁର ଶୃଙ୍ଗ ଚନ୍ଦ୍ରତେଜ

ସପତ ହସ୍ତ ଯଜ୍ଞରୂପୀ । ଅଚ୍ଛନ୍ତି ତିନ ବେଦେ ବ୍ୟାପି ।'

ଏ ପଦଦ୍ୱୟ ଋଗ୍‌ବେଦର ଗୋଟିଏ ଋକ୍‌ର ବ୍ୟାଖ୍ୟାମୂଳକ ଅନୁବାଦ । ସେହି ଋକ୍‌ଟି ପ୍ରତୀକ ସାହିତ୍ୟର ନିଦର୍ଶନ ବୋଲି ଗ୍ରହଣୀୟ ହୋଇପାରେ । ଏହି ପ୍ରତୀକବାଦ ରହସ୍ୟବାଦ ସହିତ କେବେ କେବେ ଜଡ଼ିତ ହୋଇଥାଏ । ଏ ସମ୍ପର୍କରେ ଜଗନ୍ନାଥଙ୍କ ଭାଗବତର ନିମ୍ନଲିଖିତ ପଦ ତୁଳନୀୟ ।

ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟଭାବ ବହି । ଇତ୍ୟାଦି ।

( ୧୧ ସ୍କନ୍ଧ ୧୨ଶ ଅଧ୍ୟାୟ ୧୮ ପଦ )

ଏହା ମୁଣ୍ଡକୋପନିଷଦ୍‌ର ଗୋଟିଏ ପଦର ଅନୁବାଦ ।

ସମସାମୟିକ ଓଡ଼ିଆ ସାହିତ୍ୟରେ 'ପ୍ରତୀକବାଦ' ପ୍ରୟୋଗର ଅନେକ ନିଦର୍ଶନ ଦେଖିବାକୁ ମିଳେ । କିନ୍ତୁ ଅପରିପକ୍ୱ ଲେଖାମାନଙ୍କରେ ଏହା ଅନ୍ତର୍ବୋଧ-ବାଦରେ ପର୍ଯ୍ୟବସିତ ହୁଏ । ଅଧୁନିକ ସାହିତ୍ୟରେ ଅତି ବାସ୍ତବବାଦ (Surrealism) (ଯାର ନିଦର୍ଶନ ଦର୍ଶୀୟ ପଦରେ 'ମାଛ ଉଡ଼ୁଥିବ ନଦୀର ପାର [illegible] ପାଣି, ମାଆ ମାଉସୀ କାନ୍ଧରେ ଉଇଲ କପାଳୀ' ରେ ଦେଖିବାକୁ ମିଳେ ।) ରୂପବାଦ (Imagism) ପଦ୍ଧତିର ଅନୁକରଣ ସାହିତ୍ୟ [illegible] ପରବର୍ତ୍ତୀ ପ୍ରୟୋଗ ହେବ ବୋଲି ମୋର ଇଚ୍ଛା ।

ପରିଶେଷରେ ବକ୍ତବ୍ୟ ଏହି ଯେ '[illegible]' [illegible] ଉପାଦେୟ ପ୍ରବନ୍ଧ ଗ୍ରନ୍ଥ । ଏ ପ୍ରକାର ଗ୍ରନ୍ଥ ଓଡ଼ିଆ [illegible] ପୁଷ୍କଳଭାବରେ ଦୃଷ୍ଟିଗୋଚର ହୁଏ ନାହିଁ । ଏହା ଓଡ଼ିଆ ସ୍ନାତକ ଶ୍ରେଣୀର ଓ ବିଶେଷତଃ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପକ୍ଷରେ ଅବଶ୍ୟ ପାଠ୍ୟ । ଲେଖକଙ୍କର ଏହି କୃତି ଯୋଗୁଁ ସେ ସାହିତ୍ୟିକମାନଙ୍କ ଧନ୍ୟବାଦାର୍ହ । ଏହାର ବହୁଳ ପ୍ରଚାର ମୁଁ କାମନା କରେ ।

ମୁଖ୍ୟ ଅଧ୍ୟାପକ
ଓଡ଼ିଆ ସ୍ନାତକୋତ୍ତର ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
(ଗଞ୍ଜାମ)

କୁଞ୍ଜବିହାରୀ ତ୍ରିପାଠୀ
୨୨-୧୧-୭୧

# ଉକ୍ତି

ଅଧ୍ୟାପକ ଶ୍ରୀ ସୀତାରାମ ମହାପାତ୍ରଙ୍କଦ୍ୱାରା ଲିଖିତ 'ସମାଲୋଚନା ସମାବେଶ' ପୁସ୍ତିକାଟି ପଢ଼ିଲି । ଏହା ଏକ ସମାଲୋଚନା ସାହିତ୍ୟ । ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ ସମାଲୋଚନା ସାହିତ୍ୟ ଅନ୍ୟତର ରୂପେ ପରିଗଣିତ ହେଲେ ସୁଦ୍ଧା ଏହାର ଇତରବିଶେଷ ସର୍ବଥା ଲକ୍ଷଣୀୟ । ଅବଶ୍ୟ ଏହା ସୃଜନଶୀଳ ସାହିତ୍ୟର ପରିସରଭୁକ୍ତ ନୁହେଁ; ତଥାପି ସାହିତ୍ୟକୁ ସୃଜନଶୀଳ କରି ଗଢ଼ିବାରେ ଏହାର ଭୂମିକା ଅପରିହାର୍ଯ୍ୟ ଅଟେ । ଅନ୍ୟାନ୍ୟ ଭାଷା ତୁଳନାରେ ଓଡ଼ିଆରେ ସମାଲୋଚନା ସାହିତ୍ୟର ପ୍ରକାଶନ ଅତି ନଗଣ୍ୟ, ଏହା ସମସ୍ତେ ମାନିବେ । ଶ୍ରୀଯୁକ୍ତ ମହାପାତ୍ର ତାଦୃଶ ନଗଣ୍ୟତାକୁ ସଙ୍କୀର୍ଣ୍ଣ କରିବା ସକାଶେ ଯତ୍ନପର ହେବା ସୁଖର କଥା । ବିଷୟବସ୍ତୁର ସମାବେଶ ଦୃଷ୍ଟିରୁ ପୁସ୍ତିକାଟି ପ୍ରାକ୍-ସ୍ନାତକ ଶ୍ରେଣୀଠାରୁ ସ୍ନାତକୋତ୍ତର ଶ୍ରେଣୀ ପାଏଁ ପରୀକ୍ଷାର୍ଥୀଙ୍କର ପ୍ରଭୂତ ଉପକାର ସାଧନ କରିବ, ସନ୍ଦେହ ନାହିଁ । ସମାଲୋଚନାଗୁଡ଼ିକ ବିଶେଷକରି 'ଜୀବନ ଓ ସାହିତ୍ୟ', 'ରାଜନୀତି ଓ ସାହିତ୍ୟ', 'ଧର୍ମ ଓ ସାହିତ୍ୟ' ଭଳି ପ୍ରବନ୍ଧଗୁଡ଼ିକ ଟିକିଏ ବିସ୍ତୃତ ଆଲୋଚନାମୂଳକ ହୋଇଥିଲେ ଗ୍ରନ୍ଥଟି ଆହୁରି ଉଚ୍ଚକୋଟିର ହୋଇଥାନ୍ତା । ତଥାପି ପୁସ୍ତିକାଟିରେ ସନ୍ନିବିଷ୍ଟ 'ଉପନ୍ୟାସରେ ଚିନ୍ତାଧାରାର କ୍ରମବିବର୍ତ୍ତନ', 'ଆଧୁନିକ ପଦ୍ୟ ସାହିତ୍ୟର ଅଭ୍ୟୁଦୟ', 'ଟ୍ରେଜେଡ଼ି ଓ କମେଡ଼ି' ପ୍ରଭୃତି ଆଲୋଚନାଗୁଡ଼ିକ ଅତି ସୂକ୍ଷ୍ମ ଚିନ୍ତାସମ୍ବଳିତ ମନେ ହୁଏ । ସାଧାରଣ ବିଷୟବସ୍ତୁ ଉପରେ ଅଧିକାଂଶ ଆଲୋଚନାର ଧାରା ନିର୍ଭରଶୀଳ ଥିବା ହେତୁ ସାଧାରଣ ସାହିତ୍ୟ ପ୍ରେମୀଙ୍କର ମଧ୍ୟ ଆଦର ଲାଭ କରିବ ବୋଲି ବିଶ୍ୱାସ । ଆଶା, ଅଧ୍ୟାପକ ମହାପାତ୍ରଙ୍କ ଭବିଷ୍ୟତ ଲେଖନୀ ଏ ପ୍ରକାର ସମାଲୋଚନା ସାହିତ୍ୟ ସୃଷ୍ଟି କରିବାରୁ ନିବୃତ୍ତ ହେବନାହିଁ । ଜଗନ୍ନାଥେ କରନ୍ତୁ, ତାଙ୍କ ଲେଖନୀରେ ପୁଷ୍ପବୃଷ୍ଟି ହେଉ ।

ରିଡର୍
ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
( ଗଞ୍ଜାମ )

**ବେଣୀମାଧବ ପାଢ଼ୀ**
୧୧-୧୧-୭୧



ସୁଖର କଥା ଏ ଦଶ ବର୍ଷ ଭିତରେ ଓଡ଼ିଆ ସମାଲୋଚନା ସାହିତ୍ୟର ଉଲ୍ଲେଖଯୋଗ୍ୟ ଉନ୍ନତି ଘଟିଛି । ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ପ୍ରକାଶିତ ସମାଲୋଚନା ସାହିତ୍ୟ ସହିତ ଓଡ଼ିଆ-ସମାଲୋଚନା ସାହିତ୍ୟ କିଭଳି ସମକକ୍ଷ ହେବ—ଏ ଧ୍ୟାନ ଆଜି ଆମ ସମସ୍ତଙ୍କର । ତେଣୁ ଏଦିଗରେ ଓଡ଼ିଶାର ବହୁ ଲେଖକ ଆଜି ସଚେତନ ଥିବା ଜଣାଯାଏ । ଏହା ଯେ ଏକ ଶୁଭ ସଙ୍କେତ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ସମାଲୋଚନା ସାହିତ୍ୟ ପ୍ରତି ମୋର ଯଥେଷ୍ଟ ଆଦର ରହିଛି । ପତ୍ର-ପତ୍ରିକାରେ ପ୍ରକାଶ ପାଉଥିବା ପ୍ରବନ୍ଧଗୁଡ଼ିକ ଉପରେ ମୋର ପ୍ରଥମେ ଦୃଷ୍ଟି ପଡ଼ିଥାଏ । ତେଣୁ ଏସବୁ ଦୃଷ୍ଟିରୁ ଖଣ୍ଡେ ଆଲୋଚନାମୂଳକ ଗ୍ରନ୍ଥ ରଚନା କରିବା ପାଇଁ ମୋର ବହୁ ଆଗରୁ ମନ ବଳିଥିଲା, ପୁଣି ସ୍ନାତକୋତ୍ତର ଓଡ଼ିଆ ଶ୍ରେଣୀରେ ଅଧ୍ୟାପନା କଲାବେଳେ କେତୋଟି ବିଷୟର ଅଭାବ ମୁଁ ଅନୁଭବ କଲି । ଅଥଚ ବଙ୍ଗଳା ଏବଂ ଇଂରାଜୀରେ ସେହିସବୁ ବିଷୟ ଉପରେ ଯଥେଷ୍ଟ ଆଲୋକପାତ କରାଯାଇଛି । ତେଣୁ କେତୋଟି ଇଂରାଜୀ ଓ ବଙ୍ଗଳା ସମାଲୋଚନା ସାହିତ୍ୟ ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରି ଏ ଗ୍ରନ୍ଥ ରଚନା କଲି । ଏ ଗ୍ରନ୍ଥରେ ସନ୍ନିବିଷ୍ଟ କେତୋଟି ପ୍ରବନ୍ଧ ଅବଶ୍ୟ ବହୁ ଆଗରୁ କେତୋଟି ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା; କିନ୍ତୁ ଅନ୍ୟ କେତୋଟି ବିଷୟର କେବଳ ତାତ୍ତ୍ୱିକ ଆଲୋଚନା ପ୍ରଥମେ ମୁଁ ଏହି ଗ୍ରନ୍ଥରେ କରିଅଛି । ମୋର ଆଲୋଚନା ଯେ ଅତି ଉଚ୍ଚ ଧରଣର ଏହା କହିବାର ସେହି ସାହସ କିମ୍ବା ଶକ୍ତି ମୋର ନାହିଁ । ତେବେ ଏତିକି ମାତ୍ର କହିପାରେ କେତେକ ନୂତନ ବିଷୟବସ୍ତୁ ଉପରେ ଆଲୋଚନା କରାଯାଇଥିବା ହେତୁ ଏହାର ଉପାଦେୟତା କେତେକ ପରିମାଣରେ ହୁଏତ ଉପଲବ୍ଧ ହୋଇପାରେ । ତେଣୁ ଏହି ଗ୍ରନ୍ଥ ଓଡ଼ିଶାର ସାହିତ୍ୟାନୁରାଗୀ ଓ ସାହିତ୍ୟର ଛାତ୍ରଛାତ୍ରୀମାନଙ୍କ ମନରେ ଆଗ୍ରହ ସୃଷ୍ଟି କରି ଯଦି କିଛି ଉପକାର ସାଧିତ କରେ ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

'ଅଧ୍ୟାପକ ବନ୍ଧୁ' ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ ଏବଂ ଲେଖକ ଶ୍ରଦ୍ଧେୟ ବନ୍ଧୁ ଶ୍ରୀମାନ୍ ସୂର୍ଯ୍ୟନାରାୟଣ ଦାସ, ଓ. ଏଫ୍. ଏସ୍. ଏ ଗ୍ରନ୍ଥ ରଚନାରେ ମୋତେ ଅଶେଷ ଉତ୍ସାହିତ କରିଥିବାରୁ ଗଭୀର ଆନ୍ତରିକତା ପାଇଁ ସେ ଦୁହେଁ ମୋର ଧନ୍ୟବାଦାର୍ହ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଅଧ୍ୟାପକ ଗୁରୁଦେବ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଏବଂ ଉକ୍ତ ବିଭାଗର ରିଡ଼ର୍ ସମ୍ମାନନୀୟ ଡକ୍ଟର ବେଣୀମାଧବ ପାଢ଼ୀ ମୋର ଅନୁରୋଧ ରକ୍ଷା କରି ଏ ଗ୍ରନ୍ଥର ପ୍ରବନ୍ଧଗୁଡ଼ିକ ପାଠ କରିବା ପରେ ନିଜ ନିଜର ମନ୍ତବ୍ୟ ପ୍ରଦାନ କରିଥିବା ପାଇଁ ସେମାନଙ୍କ ନିକଟରେ ମୁଁ ଚିର ଋଣୀ ।

ମହର୍ଷିଙ୍କର ଆଶୀର୍ବାଦ ନ ଥିଲେ ନୈତିକତା ଦୃଷ୍ଟିରୁ ଏ ପୁସ୍ତକ ଅପ୍ରକାଶ୍ୟ ହିଁ ହେବ । ତେଣୁ ଲେଖା ପାଇଁ ବାଧ ହେଉଛି । ବ୍ରହ୍ମପୁର ଜନପ୍ରିୟ ବୁକ୍ ଷ୍ଟୋରର ସ୍ୱତ୍ୱାଧିକାରୀ ଶ୍ରୀ କସ୍ତୁରଚନ୍ଦ୍ର ଦାସ ନାନା ଅସୁବିଧା ସତ୍ତ୍ୱେ ଏ ପୁସ୍ତକ ପ୍ରକାଶନର ଦାୟିତ୍ୱ ଗ୍ରହଣ କରି ମୋତେ ଯଥେଷ୍ଟ ଉତ୍ସାହିତ କରିଛନ୍ତି । ତେଣୁ ତାଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ବହୁ ସାବଧାନତା ସତ୍ତ୍ୱେ ଅଳ୍ପ କେତେକ ମୁଦ୍ରଣଗତ ତ୍ରୁଟି ରହିଥିବାରୁ ପାଠକମାନେ ଉଦାର ମନରେ ସେହି ତ୍ରୁଟି ମାର୍ଜନା କରିବେ ବୋଲି ଅନୁରୋଧ କରେ ।

ବ୍ରହ୍ମପୁର
ମାର୍ଗଶିର ପୂର୍ଣ୍ଣିମା
୨-୧୨-୧୯୭୧

ବଶମ୍ବଦ
ସୀତାରାମ ମହାପାତ୍ର

# ଜୀବନ ଓ ସାହିତ୍ୟ

ସାହିତ୍ୟ ଜୀବନର ରସ-ଶିଳ୍ପ । ଜୀବନ ସହିତ ସାହିତ୍ୟର ସମ୍ପର୍କ ଯେ ଅତି ନିବିଡ଼ ଓ ଅଚ୍ଛେଦ୍ୟ, ଏହା ସର୍ବବାଦୀସମ୍ମତ । ଜୀବନକୁ ବାଦ ଦେଲେ ସାହିତ୍ୟର ଅସ୍ତିତ୍ୱ ଅସମ୍ଭବ । **Mathew Arnold**ଙ୍କ ଭାଷାରେ, **"Poetry is the criticism of life."** ଅର୍ଥାତ୍ ସାହିତ୍ୟ ଜୀବନର ପ୍ରତିଚ୍ଛବି ମାତ୍ର ।

ମଣିଷ ଏହି ଧରାପୃଷ୍ଠରେ ଜନ୍ମ ଲଭିକଲା ମାତ୍ରେ ସେ ନିଜକୁ ଯେତିକି ସ୍ୱାଧୀନ ବୋଲି ମନେ କରେ, ସେତିକି ସେ ଏକାନ୍ତଭାବେ ସ୍ୱାଧୀନ ନୁହେଁ । ମଣିଷ ଏକ ସାମାଜିକ ପ୍ରାଣୀ । ସମାଜ ଭିତରେ ବଞ୍ଚି ରହି ସାମାଜିକ ଜୀବନକୁ ଅନୁସରଣ କରିବା ତାହାର ମୌଳିକ ପ୍ରବୃତ୍ତି । ଏକ ଦିଗରେ ସେ ଜଣେ ବ୍ୟକ୍ତିବିଶେଷ, ଅନ୍ୟ ଦିଗରେ ସେ ସମାଜର ଅଂଶ ବିଶେଷ । ମଣିଷ ମନ ଭିତରେ ପଶୁ ପ୍ରବୃତ୍ତି ଯେତିକି ରହିଅଛି, ସେତିକି ବିଚାରବୁଦ୍ଧି ଓ ଅନୁଭୂତି ପ୍ରଚ୍ଛନ୍ନଭାବେ ରହିଅଛି । ସଭ୍ୟତାର କ୍ରମ ବିବର୍ତ୍ତନରେ ସାମାଜିକ ଜୀବନ ଅଧିକ ସୁଶୃଙ୍ଖଳିତ ହୋଇ ଉଠିଥାଏ । ମଣିଷର ବିଚାରବୁଦ୍ଧି ଓ ଅନୁଭୂତି ସମାଜରେ ତାକୁ ଶ୍ରେଷ୍ଠ ଆସନ ଦେଇଥାଏ ଏବଂ ବ୍ୟକ୍ତିବିଶେଷର ଦାନରେ ସମାଜ-ପରିପୁଷ୍ଟ ହୋଇଥାଏ । ସମାଜର ସାମାଜିକ ମଙ୍ଗଳ ବିଧାନ ପାଇଁ ବ୍ୟକ୍ତି ତାର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ମୈତ୍ରୀ ଭାବ ପ୍ରକାଶ କରିଥାଏ । ମଣିଷର ଆଶା, ଆକାଂକ୍ଷା ଯେତିକି ବିଚିତ୍ର, ସେତିକି ଅନନ୍ତ । ସେ ନିଜକୁ ଆପଣା ମଧ୍ୟରେ ଏବଂ ଅନ୍ୟ ମଧ୍ୟରେ ଦେଖିବାକୁ ଚାହେଁ ଓ ପାଇବାକୁ ଚାହେଁ । ସୃଷ୍ଟିର ମୂଳରେ ଅଛି ଆନନ୍ଦର ଉତ୍ସ । ମଣିଷର ଏହି ଆନନ୍ଦକୁ ଉପଭୋଗ କରିବା ପାଇଁ ନିଜ ଭାବ-କଳ୍ପନାକୁ ବିଭିନ୍ନ ରଙ୍ଗରେ ତୋଳି ସେ ଆଶାୟୀ ହୋଇଉଠେ । ମଣିଷ କେବଳ ନିଜେ ସେହି ମାଧୁର୍ଯ୍ୟ ଉପଭୋଗ କରିଥାଏ

ଯେହା ଗୁଡ଼େ, ନିଜର ଆତ୍ମୀୟ ସ୍ୱଜନ, ବନ୍ଧୁ କୁଟୁମ୍ବମାନଙ୍କ ଆନନ୍ଦ ପାଇଁ ସେ ବ୍ୟାକୁଳ ହୋଇଉଠେ । ଏହି ବାସ୍ତବ ପାରିପାର୍ଶ୍ୱିକ ଅବସ୍ଥା ବ୍ୟତୀତ ଏକ କାଳ୍ପନିକ ଜଗତର ସନ୍ଧାନ ଓ ସେଥିର ଆନନ୍ଦ, ସୁଖ ପାଇଁ ସେ ସର୍ବଦା ଚଞ୍ଚଳ ଥାଏ । କାରଣ ବାସ୍ତବ ଜଗତରେ ମଣିଷ ଯେଉଁ ଆଶା, ଆକାଂକ୍ଷାକୁ ପରିତୃପ୍ତ କରିପାରେ ନାହିଁ ତାହା ସେ କାଳ୍ପନିକ ଜଗତରେ ଲାଭକରି ତୃପ୍ତି ପାଇଥାଏ; ଜୀବନର ପୂର୍ଣ୍ଣତା ଉପଭୋଗ କରିଥାଏ । ମଣିଷ ସାଧାରଣତଃ ରୂପ ପିପାସୁ ଓ ସ୍ରଷ୍ଟା । ସ୍ୱକୀୟ ଭାବନାକୁ ରୂପାନ୍ତରିତ କରିବାର ଇଚ୍ଛା ତାହାର ସହଜାତ ପ୍ରବୃତ୍ତି । ତେଣୁ ଆତ୍ମପ୍ରକାଶ କାମନା, ପାରିପାର୍ଶ୍ୱିକ ସହିତ ସଂଯୋଗ ଆକାଂକ୍ଷା, କଳ୍ପଜଗତର ପ୍ରୟୋଜନୀୟତା ଓ ରୂପପ୍ରିୟତା ଏହିସବୁ ସାହିତ୍ୟ ସୃଷ୍ଟିର ମୂଳ ଉତ୍ସ ଏବଂ ବିଶ୍ୱ ପ୍ରକୃତି, ଭଗବାନ, ମାନବ ଓ ଜୀବଜଗତ ସମସ୍ତ ହିଁ ସାହିତ୍ୟର ସାମଗ୍ରୀ । କିନ୍ତୁ ସାହିତ୍ୟରେ ସବୁଠୁ ବଡ଼ କଥା ହେଲା ସାର୍ବଜନୀନତା । ଦେଶ ଓ କାଳକୁ ନେଇ ହିଁ ମଣିଷର ପ୍ରବୃତ୍ତି, ଆଚାର ବ୍ୟବହାର, ପରିବର୍ତ୍ତନ ହୋଇଥାଏ ଏବଂ ହେବା ବି ସ୍ୱାଭାବିକ । କିନ୍ତୁ ତାର ହୃଦୟର କିଛି ପରିବର୍ତ୍ତନ ହୋଇ ନଥାଏ । ରାମାୟଣ ଓ ମହାଭାରତ ଯୁଗରେ ଆମ ସାମାଜିକ ଜୀବନ ଯାହାଥିଲା ଏବଂ ପାଶ୍ଚାତ୍ୟ ଜଗତରେ ହୋମର, ମିଲଟନ୍ ଓ ସେକ୍ସପିୟରଙ୍କ ସମୟରେ ସେଠାକାର ସାମାଜିକ ଜୀବନ ଯାହାଥିଲା, ପରବର୍ତ୍ତୀ ସମୟରେ ସେହି ସାମାଜିକ ଜୀବନର ବିରାଟ ପରିବର୍ତ୍ତନ ଦେଖିବାକୁ ମିଳେ । କିନ୍ତୁ ଯାହାକୁ ଆମେ ଶାଶ୍ୱତ ସାହିତ୍ୟ ରୂପେ ଗ୍ରହଣ କରିଥାଉ ସେହି ସାହିତ୍ୟରେ ଅନନ୍ତ ମାନବର ହୃଦୟ ଓ ଚରିତ୍ର ପ୍ରକାଶ ପାଇଥାଏ, ତେଣୁ ଦେଶ କାଳ ଭେଦରେ ସାମାଜିକ ଜୀବନର ପରିବର୍ତ୍ତନ ହେଲେ ବି ସେହି ସାହିତ୍ୟ ବିଶ୍ୱ ଦରବାରରେ ଆଦୃତ । କାଳିଦାସଙ୍କ କାବ୍ୟ କବିତା ଭାରତବାସୀଙ୍କୁ ଯେତିକି ଆନନ୍ଦ ଦେଇଥାଏ, ଯେତିକି ସେମାନଙ୍କ ହୃଦୟକୁ ଆଲୋଡ଼ନ କରିବା ସଙ୍ଗେ ସଙ୍ଗେ ରସାପ୍ଳୁତ କରିଥାଏ ସେତିକି ଆନନ୍ଦ ଦେଇଥାଏ ପାଶ୍ଚାତ୍ୟବାସୀଙ୍କ ମନରେ ଏବଂ ରସ ସଞ୍ଚାର କରିଥାଏ ସେମାନଙ୍କ ହୃଦୟରେ ।

ଯୁଗ ସାହିତ୍ୟ ବା ଯୁଗଧର୍ମୀ ସାହିତ୍ୟ ଯେ କୌଣସି ଯୁଗର ନିର୍ଦ୍ଦିଷ୍ଟ ସାମାଜିକ, ରାଜନୈତିକ, ଅର୍ଥନୈତିକ, ଆଧ୍ୟାତ୍ମିକ ପରିସ୍ଥିତି

ଓ ସମସ୍ୟାକୁ ନେଇ ଆତ୍ମପ୍ରକାଶ କରିଥାଏ । କିନ୍ତୁ ସେହିସବୁ ନିର୍ଦ୍ଦିଷ୍ଟ ସମସ୍ୟାର ସମାଧାନ ହେବା ପରେ ସେହି ସାହିତ୍ୟର ଚିରନ୍ତନ ମୂଲ୍ୟ ଆଉ କିଛି ନଥାଏ । କିନ୍ତୁ ଚିରନ୍ତନ ମାନବ ହୃଦୟର କାହାଣୀ ଯେଉଁ ସାହିତ୍ୟରେ ପ୍ରକାଶ ପାଇଥାଏ, ସେହି ସାହିତ୍ୟ ଚିରନ୍ତନ ଚିର ଶାଶ୍ୱତ । କାଳିଦାସ, ସେକ୍ସପିୟର, ଟଲଷ୍ଟୟ, ରବୀନ୍ଦ୍ରନାଥ, ପ୍ରେମଚନ୍ଦ୍ର ଓ ଫକୀରମୋହନ ମାନବ ଜୀବନର ଶାଶ୍ୱତ ଅନୁଭୂତିକୁ ରୂପାୟିତ କରିଥିବା ଯୋଗୁଁ ସେହି ବରେଣ୍ୟ ଲେଖକଙ୍କ ସାହିତ୍ୟ ଶାଶ୍ୱତ ସାହିତ୍ୟ ରୂପେ ପରିଚିତ ଏବଂ ସେମାନଙ୍କ ରସମୟୀ ଲେଖନୀରେ ଯେଉଁ ଚରିତ୍ରଗୁଡ଼ିକ ସୃଷ୍ଟି ହୋଇଛି ତାହା ବିଶ୍ୱସମାଜର ବ୍ୟକ୍ତିମାନଙ୍କ ନିକଟରେ ସୁପରିଚିତ ।

ଯେ କୌଣସି ଲେଖକର ମୂଳଧର୍ମ ହେଲା ସମାଜର ବାସ୍ତବ ଚିତ୍ରକୁ ସାହିତ୍ୟରେ ରୂପାୟିତ କରିବା । କିନ୍ତୁ କେବଳ ବାସ୍ତବତା ବ୍ୟତୀତ ଜୀବନର ମୂଲ୍ୟବୋଧ, ଭାବପ୍ରାଚୂର୍ଯ୍ୟ ଓ ରସାନୁଭୂତି ଯଦି ସାହିତ୍ୟରେ ପ୍ରକାଶ ପାଇ ନଥାଏ, ତାହାହେଲେ ସେହି ସାହିତ୍ୟ ପ୍ରସ୍ତରଧର୍ମୀ ସାହିତ୍ୟ ହୋଇ ରହିଯାଏ ଏବଂ ସାର୍ବଜନୀନ ଅବେଦନର ସଙ୍କେତ ସେଥିରେ ଦେଖିବାକୁ ମିଳେ ନାହିଁ । ପୃଥିବୀର ବିଭିନ୍ନ ଦେଶର ଲୋକେ ବିଭିନ୍ନ ପ୍ରକାର ସମାଜ ପଦ୍ଧତି ଓ ଜୀବନ ଧାରା ପ୍ରଣାଳୀ ମଧ୍ୟରେ ବାସ କରିଥାନ୍ତି । ତେଣୁ ଲେଖକ ସ୍ୱୀୟ ଉଦାର କଳ୍ପନା ଓ ଅନୁଭୂତିହୀନ ମାନବ ପ୍ରୀତି ପ୍ରକାଶ କରି ବିଶ୍ୱର ସମସ୍ତ ଜନସାଧାରଣଙ୍କ ହୃଦୟକୁ ଜୟ କରିବା ଉଚିତ । ବିଭିନ୍ନ ରୀତିନୀତି, ଚାଲିଚଳନ ଚିନ୍ତା ଓ ଆଦର୍ଶ ସତ୍ତ୍ୱେ ସମସ୍ତଙ୍କୁ ଗୋଟିଏ ପ୍ରେମଡୋରରେ ବାନ୍ଧି ରଖିବା ଉଚିତ ।

ସମାଜକୁ ପରିପୁଷ୍ଟ କରିବାରେ, ସମାଜକୁ ପରିବର୍ତ୍ତନ କରିବାରେ ଏବଂ ସମାଜକୁ ପ୍ରଭାବିତ କରିବାରେ ସାହିତ୍ୟିକ ଯୁଗେ ଯୁଗେ ଶ୍ରେଷ୍ଠ ଭୂମିକା ଗ୍ରହଣ କରିଅଛି । ଦେଶର ଘୋର ସଙ୍କଟବେଳେ ବିଭିନ୍ନ ସମୟରେ କ୍ଷଣଜନ୍ମା ପୁରୁଷ ଜନ୍ମ ଲଭିକରି ସମାଜର ଆବର୍ଜନା, ଅନ୍ଧକାର ଦୂର କରିବା ପାଇଁ ଆଲୋକବର୍ତ୍ତିକା ପ୍ରଦର୍ଶନପୂର୍ବକ ନିପୀଡ଼ିତ ସାମାଜିକ ଜୀବନରେ ପରିବର୍ତ୍ତନ ଆଣି ଏକ ସୁଖୀ ଓ ସମୃଦ୍ଧିଶାଳୀ ସମାଜ ଗଠନ କରିବା ପାଇଁ ବଳିଷ୍ଠ ଜାତୀୟ

ସାହିତ୍ୟ ସୃଷ୍ଟି କରିଥାଆନ୍ତି । ଏ ଦିଗରେ ଗର୍କି, ବଙ୍କିମ୍, ଗାନ୍ଧୀ, ନେହେରୁ, ଟ୍ରଗୋରବନ୍ଧୁ, କୁନ୍ତଳାକୁମାରୀ ଓ ସରୋଜନୀ ନାଇଡ଼ୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସମାଜରେ ଆଧ୍ୟାତ୍ମିକତା ଓ ନୈତିକତାର ପରିପ୍ରବୃତ୍ତିର ତଥା ଜନ-ଶିକ୍ଷାର ପ୍ରଚାରପ୍ରସାର ପାଇଁ ସାହିତ୍ୟ ଯଥେଷ୍ଟ ସାମଗ୍ରୀ ଯୋଗାଇଥାଏ । ସତ୍ୟ, ଶିବ, ସୁନ୍ଦରରଁ ଉପାସନାରେ ସାହିତ୍ୟିକ ସର୍ବଦା ବ୍ୟସ୍ତ । ସାଧାରଣତଃ ଲୋକସାହିତ୍ୟ ଜନଜୀବନକୁ ଆଶ୍ରୟ କରି ଜନସାଧାରଣଙ୍କୁ ଏହି ଦିଗରେ ଶିକ୍ଷା ଦେବା ପାଇଁ ଗଢ଼ି ଉଠିଥାଏ ।

ଯୁଗ ଯୁଗ ଧରି ଜୀବନ ସହିତ ସାହିତ୍ୟର ସମ୍ପର୍କ ଅତି ନିବିଡ଼, ଏହା ସୁବିଦିତ । ଦେଶ ଦେଶ ଭିତରେ ଓ ସମାଜ ସମାଜ ମଧ୍ୟରେ ବ୍ୟକ୍ତି-ବିଶେଷଙ୍କ ମତବାଦରେ ଯଥେଷ୍ଟ ପାର୍ଥକ୍ୟ ଥିଲେ ମଧ୍ୟ ସାହିତ୍ୟ ସେହି ପାର୍ଥକ୍ୟକୁ ଭ୍ରୂକ୍ଷେପ ନକରି ନାନା ଘାତ ପ୍ରତିଘାତ ମଧ୍ୟରେ ନିତ୍ୟ ଅମରତ୍ୱ ଲାଭକରି ଆସିଛି । ସାହିତ୍ୟର ଅସଲ ଉଦ୍ଦେଶ୍ୟ ଜୀବନ ଓ ଜଗତର ବିଚିତ୍ର ଆନନ୍ଦମୟ ରୂପ ସୃଷ୍ଟି । ଅନନ୍ତ ଜୀବନ ସହିତ ସାହିତ୍ୟର ସମ୍ପର୍କ ଚିରନ୍ତନ ଓ ନିତ୍ୟନୂତନ ।



# ଧର୍ମ ଓ ସାହିତ୍ୟ

ଧର୍ମ ଓ ପ୍ରେମର ସମନ୍ୱୟରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ବିକାଶ ଲାଭ କରିଅଛି । ହିନ୍ଦୁ ଧର୍ମର ବିଭିନ୍ନ ଶାଖାରେ ଭାରତୀୟ ସାହିତ୍ୟ ପୁଷ୍ପିତ । ଅନ୍ୟ ଦେଶର ସାହିତ୍ୟ ସେହି ଦେଶର ଧର୍ମକୁ ନିବିଡ଼ ଭାବେ ଆଶ୍ରୟ କରି ଗଢି ଉଠିନାହିଁ କିନ୍ତୁ ଭାରତର ଅଧିକାଂଶ ପ୍ରାଦେଶିକ ସାହିତ୍ୟ ଧର୍ମକୁ ଆଶ୍ରୟ କରି ବିକାଶ ଲାଭ କରିଅଛି । 'ଚର୍ଯ୍ୟାପଦ'ଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବିଭିନ୍ନ ଧର୍ମ ସଂପ୍ରଦାୟର ମତବାଦକୁ କେନ୍ଦ୍ର କରି ଓଡ଼ିଆ ସାହିତ୍ୟ ଆତ୍ମପ୍ରକାଶ କରିଅଛି । ଏ ସମୟରେ ସାହିତ୍ୟର ପ୍ରଧାନ ଉପଜୀବ୍ୟ ଦେଶର ଧର୍ମ । ଏହି ଧର୍ମ ସମ୍ବଳିତ ସାହିତ୍ୟକୁ ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇପାରେ, ଯଥା— ବୌଦ୍ଧ ସାହିତ୍ୟ, ବୈଷ୍ଣବ ସାହିତ୍ୟ, ଶାକ୍ତ ସାହିତ୍ୟ ଓ ଶୈବ ସାହିତ୍ୟ ଇତ୍ୟାଦି । କାହ୍ନୁପା, ଲୁଇପା, ତନ୍ତ୍ରିପା, ହାଡ଼ିପାଠାରୁ ଆରମ୍ଭ କରି ଶାରଳା ଦାସ ଯାଏଁ, ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ଏହି ପଞ୍ଚସଖାଙ୍କଠାରୁ ଆରମ୍ଭ କରି ଧନଞ୍ଜୟ, ଉପେନ୍ଦ୍ର ଭଞ୍ଜ, ଭକ୍ତଚରଣ, ଭୂପତି ପଣ୍ଡିତ, ଦେବଦୁର୍ଲ୍ଲଭ ଓ ଅଭିମନ୍ୟୁ ଯାଏଁ ଏବଂ ପରେ ପରେ ଭୀମା ଭୋଇ, କବିସୂର୍ଯ୍ୟ ବଳଦେବ, ଗୋପାଳକୃଷ୍ଣ ଓ ଭକ୍ତକବି ମଧୁସୂଦନ ଯାଏଁ ବିଭିନ୍ନ ସମୟରେ ଧର୍ମ ସଂପ୍ରଦାୟର ବିଭିନ୍ନ ମତବାଦ ସାହିତ୍ୟର ପ୍ରଧାନ ଉପଜୀବ୍ୟ ହୋଇଛି ।

ଓଡ଼ିଶା ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ ବିଭିନ୍ନ ସମୟରେ ଓଡ଼ିଶାର ରାଜାମାନେ ବିଭିନ୍ନ ଧର୍ମ ଗ୍ରହଣ କରି ସେହି ଧର୍ମକୁ ଲୋକପ୍ରିୟ କରାଇବା ପାଇଁ ଆପ୍ରାଣ ଉଦ୍ୟମ କରିଅଛନ୍ତି । ତାଙ୍କର ପୃଷ୍ଠପୋଷକତାରେ ସେହିସବୁ ଧର୍ମର ପ୍ରଚାର ହୋଇଛି ସାହିତ୍ୟ ମାଧ୍ୟମରେ ।

ଓଡ଼ିଶାର ଧର୍ମ କହିଲେ ମୁଖ୍ୟତଃ 'ଜଗନ୍ନାଥ ଧର୍ମ'କୁ ବୁଝାଏ ଏବଂ ଜଗନ୍ନାଥ ହିଁ ଶ୍ରେଷ୍ଠ ଆରାଧ୍ୟ ଦେବତା । ତେଣୁ ଶଙ୍କର, ଶ୍ରୀଚୈତନ୍ୟ, ରାମାନୁଜ ପ୍ରଭୃତି ଧର୍ମପ୍ରଚାରକମାନେ ଶ୍ରୀକ୍ଷେତ୍ରକୁ ଆସି ସ୍ୱଧର୍ମ ମତକୁ ପ୍ରଚାର ଓ ପ୍ରତିଷ୍ଠିତ କରିବା ପାଇଁ ସାହିତ୍ୟକୁ ମାଧ୍ୟମରୂପେ ଗ୍ରହଣ କରିଥିଲେ ।

ଡକ୍ଟର ହରେକୃଷ୍ଣ ମହତାବ "ଓଡ଼ିଶା ଇତିହାସ" ବହିର 'ଓଡ଼ିଶାର ଧର୍ମ' ପରିଚ୍ଛେଦରେ ପ୍ରାଞ୍ଜଳ ଭାବେ ଲେଖିଅଛନ୍ତି—"ଓଡ଼ିଶାର ଧର୍ମ ବୋଲନ୍ତେ ଜଗନ୍ନାଥଙ୍କ ଉପାସନା ବୁଝାଏ । ଅନ୍ୟତ୍ର ରାମ, କୃଷ୍ଣ ଆଦି ଜନତା ହୃଦୟରେ ଈଶ୍ୱରଙ୍କ ଅବତାର ବୋଲି ଯେପରି ସମସ୍ତ ଧାର୍ମିକ-ମାନଙ୍କର ବିଶ୍ୱାସର କେନ୍ଦ୍ର ହୋଇଛନ୍ତି, ଓଡ଼ିଶାରେ ସେହିପରି ଜଗନ୍ନାଥ ଈଶ୍ୱରଙ୍କ ସାକ୍ଷାତ ଅବତାର । ପଦ୍ମଲୋଚନ ପରିବର୍ତ୍ତେ "ଚକାଡ଼ୋଳା ହିଁ ଓଡ଼ିଶାର ଅବତାର । ବୌଦ୍ଧ, ଶୈବ, ବୈଷ୍ଣବ ପ୍ରଭୃତି କେତେ ମତବାଦର ବାତ୍ୟା ଏ ପ୍ରଦେଶରେ ବହିଯାଇଛି । କିନ୍ତୁ କେହି ଜଗନ୍ନାଥଙ୍କୁ ତଳେ ହେଲେ ତାଙ୍କ ସ୍ଥାନରୁ ଟଳାଇ ପାରିନାହାନ୍ତି । ଶାକ୍ତ, ତାନ୍ତ୍ରିକ, ବୈଷ୍ଣବ ସବୁପ୍ରକାର ପୂଜାବିଧି ଜଗନ୍ନାଥଙ୍କଠାରେ ପ୍ରଚଳିତ । ଦୁଇବାହୁ ପ୍ରସାରି ଜଗନ୍ନାଥ ସମସ୍ତ ଦର୍ଶନ ଓ ମତବାଦକୁ ନିଜ କୋଳ ଭିତରକୁ ନେଇ ନିଜର କରି ନିଅନ୍ତି । ଏଣୁ ଓଡ଼ିଶାର ଧର୍ମର ଇତିହାସ ବୋଲନ୍ତେ ଜଗନ୍ନାଥ ଇତିହାସ ବୁଝାଏ ।"

ଏହି ଜଗନ୍ନାଥ ଧର୍ମ ପ୍ରାଚୀନ ଓଡ଼ିଆ ସାହିତ୍ୟର ପ୍ରଧାନ ଉପଜୀବ୍ୟ । ଉତ୍କଳୀୟ ବୈଷ୍ଣବ ଓ ଗୌଡ଼ୀୟ ବୈଷ୍ଣବ କବି ଜ୍ଞାନମାର୍ଗ ଓ ପ୍ରେମ ମାର୍ଗକୁ ଆଶ୍ରୟ କରି ବିଭିନ୍ନ ଦାର୍ଶନିକ ମତବାଦର ପରିପ୍ରଚାର ପାଇଁ ଓଡ଼ିଆ ଭାଷାରେ ରସାଳ ସାହିତ୍ୟ ସୃଷ୍ଟି କରିଅଛନ୍ତି । ଏହିସବୁ କାବ୍ୟ କବିତାରେ ଧର୍ମମତ ବିଶେଷଭାବେ ସ୍ଥାନ ପାଇଥିଲେ ସୁଦ୍ଧା "ବାକ୍ୟଂ ରସାତ୍ମକଂ କାବ୍ୟମ୍" ନୀତିରେ ରସ ହିଁ କାବ୍ୟର ଆତ୍ମାସ୍ୱରୂପ ପରିଗୃହୀତ; ରସାନୁଭୂତି ଯଥେଷ୍ଟ ପରିମାଣରେ ରହିଛି ଏହି କାବ୍ୟ କବିତାରେ ।

ଇଂରେଜ ଶାସନ ପରେ ଆଧୁନିକ ଯୁଗରେ ବହୁ କବି ହିନ୍ଦୁର ଧର୍ମଶାସ୍ତ୍ର ଓ ପୁରାଣାଦିରୁ ବହୁ ଉପାଦାନ ସଂଗ୍ରହ କରି କାବ୍ୟ କବିତା ରଚନା କରିଅଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ଯେପରି ପ୍ରାଚୀନ ଭାରତର ସଂସ୍କୃତି ଓ ଆଦର୍ଶ ପ୍ରତି ଗଭୀର ଶ୍ରଦ୍ଧା ପ୍ରକାଶ କରି ଉପନିଷଦ, ପୁରାଣ ପ୍ରଭୃତି ପ୍ରାଚୀନ ସାହିତ୍ୟରୁ ଉପାଦାନ ସଂଗ୍ରହ କରି 'ଗୀତାଞ୍ଜଳି' ପରି ଶ୍ରେଷ୍ଠଧର୍ମମୂଳକ ରଚନା ସୃଷ୍ଟି କରିଛନ୍ତି, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଭକ୍ତକବି ମଧୁସୂଦନ, ମାନବବାଦୀ ଫକୀରମୋହନ, ପ୍ରକୃତି କବି ଗଙ୍ଗାଧର ଠିକ୍ ସେହିପରି ଭାରତୀୟ ପରମ୍ପରା, ଆର୍ଯ୍ୟ ସଂସ୍କୃତି ଓ ଆଦର୍ଶ ପ୍ରତି ସମ୍ମାନ ପ୍ରଦର୍ଶନ କରି ଆଧ୍ୟାତ୍ମିକତା, ନୈତିକତା ଓ ମାନବିକତାର ପରିପ୍ରକାଶ ପାଇଁ ନୀତିଶିକ୍ଷାମୂଳକ କାବ୍ୟ କବିତା ସୃଷ୍ଟି କରିଅଛନ୍ତି । ଫକୀରମୋହନଙ୍କ ଉପନ୍ୟାସରେ ହିନ୍ଦୁ ସମାଜର ଚିତ୍ର ଏବଂ ହିନ୍ଦୁର ନିଷ୍ଠାବତୀ ରମଣୀର ଚିତ୍ର ବହୁ ଜାଗାରେ ଦେଖିବାକୁ ମିଳେ । ପରେ ପରେ କାଳନ୍ଦୀଚରଣଙ୍କ 'ମାଟିର ମଣିଷ' ରାମାୟଣର ଭ୍ରାତୃପ୍ରୀତି ଆଦର୍ଶକୁ କେନ୍ଦ୍ର କରି ରଚିତ ଏବଂ ଔପନ୍ୟାସିକ କାହ୍ନୁଚରଣଙ୍କ ରଚନାରେ ବି ହିନ୍ଦୁର ଚିରନ୍ତନ ପ୍ରଥା ଓ ବିଧି-ନିଷେଧ ସୁରକ୍ଷିତ ।

ଯେଉଁ ସାହିତ୍ୟ ନିଛକ ଧର୍ମମତ କିମ୍ବା ସାଂପ୍ରଦାୟିକ ଧର୍ମାଦର୍ଶକୁ ଅବଲମ୍ବନ କରି ଗଢ଼ି ଉଠିଥାଏ, ତେବେ ସେହି ସାହିତ୍ୟ ରସିକ-ସମାଜର ଆଦରର ସାମଗ୍ରୀ ହୋଇପାରେ ନାହିଁ । କିନ୍ତୁ ସେହି ସାହିତ୍ୟ ଯଦି ରସୋତ୍ତୀର୍ଣ୍ଣ ହୁଏ ତାହାହେଲେ ପାଠକମାନଙ୍କର ଆଦରର ସାମଗ୍ରୀ ହୋଇଥାଏ; ପାଠକ ତାହାକୁ ଅପାଂକ୍ତେୟ ମନେ କରେନାହିଁ । ସେଥିରୁ ସେ ଭାବ ଓ ରସ ଗ୍ରହଣ କରିଥାଏ । ସାହିତ୍ୟର ରାଜ୍ୟ, ରସର ରାଜ୍ୟ ଅଲୌକିକ ରାଜ୍ୟ । ଏଠାରେ କୌଣସି ଲୌକିକ ଧର୍ମମତ ସହିତ ସାହିତ୍ୟର କୌଣସି ଦ୍ୱନ୍ଦ୍ୱ ଲାଗି ରହିନଥାଏ । ସାହିତ୍ୟର ଦେବଦେବୀ ଓ ପୌରାଣିକ ଚରିତ୍ରଗୁଡ଼ିକ ପ୍ରତୀକ ମାତ୍ର । ତେଣୁ ପାଠକ ସେହି ସାହିତ୍ୟରେ ଥିବା ଭାବ ଓ ଆଦର୍ଶଗତ ଚିନ୍ତାକୁ ହିଁ ଗ୍ରହଣ କରିଥାଏ ।

ବର୍ତ୍ତମାନ ଅନେକ ଲେଖକ ଧର୍ମ, ଜାତୀୟ ସଂସ୍କୃତି, ଦେବଦେବୀ ଓ ହିନ୍ଦୁର ଆସ୍ଥାର ପ୍ରତି ବର୍ଜନ କରି ଲେଖନୀ ଚାଳନା କରନ୍ତି । ଅନେକ୍ୟ

ଧର୍ମ୍ମ ନିରପେକ୍ଷ ରାଷ୍ଟ୍ରରେ ଏହି ଧରଣର ସାହିତ୍ୟ ନବଗଠନ, କିନ୍ତୁ ଅତି ମାତ୍ରାରେ ବସ୍ତୁବାଦର ପ୍ରଚାର ମାନବିକତା ନଷ୍ଟ କରିଦିଏ । ଆଧ୍ୟାତ୍ମିକ ଚେତନାର ଅଭାବରେ ନୈତିକତା ଓ ମାନବିକତାର ବିକାଶ ବାଧା ପ୍ରାପ୍ତ ହୋଇଥାଏ । ଫଳରେ ସମାଜରେ ମଣିଷ ଦୁର୍ଦ୍ଦାନ୍ତ, ଦୁର୍ଦ୍ଧର୍ଷ ଓ ସଂଶୟବାଦୀ ହୋଇଉଠେ ।

ଆଜି ସମଗ୍ର ବିଶ୍ୱର ସାହିତ୍ୟ କ୍ଷେତ୍ରରେ ସେହି ପୁରାତନ ଚିନ୍ତାଧାରା ପୁଣି ଥରେ ନୂତନରୂପରେ ଦେଖାଦେଲାଣି । ବିଶ୍ୱର ଅଧିକାଂଶ ରାଷ୍ଟ୍ରନାୟକ, ଲେଖକ, ଦାର୍ଶନିକ ଓ ବୁଦ୍ଧିଜୀବୀ ବର୍ତ୍ତମାନ ସମାଜର ଗତିନୀତି, ଚାଲିଚଳନ ଓ ସାମାଜିକ ଦୃଷ୍ଟିଭଙ୍ଗୀ ଦେଖି ହତାଶ ହେଲେଣି । ତେଣୁ ସୁସ୍ଥ ସମାଜ ଗଠନ ଓ ଶାନ୍ତି ସ୍ଥାପନ ପାଇଁ ସମସ୍ତେ ଆଜି ବ୍ୟାକୁଳ । ଏହାର ଏକମାତ୍ର ପନ୍ଥା ଆଧ୍ୟାତ୍ମିକତା ଓ ମାନବିକତାର ମହାମନ୍ତ୍ର ସମାଜ ଭିତରେ ପୁଣି ପ୍ରଚାର କରିବା । ସେଥିପାଇଁ ବିଶ୍ୱର ବିଶିଷ୍ଟ କବି **T. S. Elliot** ସ୍ୱରଚିତ କାବ୍ୟ **'The Waste Land'**ରେ ସେହି ଶାନ୍ତିର ବାଣୀ ପ୍ରଚାର କରି ମାନବିକତାର ଉପାସନା ପାଇଁ ଆହ୍ୱାନ ଜଣାଇଛନ୍ତି ।

ଧର୍ମ ଧାରଣା ବା ଆଧ୍ୟାତ୍ମିକ ଚିନ୍ତାକୁ ବାଦ ଦେଲେ ସାହିତ୍ୟ ତଥା ସମାଜର ପ୍ରଭୂତ ଅନିଷ୍ଟ ସାଧିତ ହେବା ସ୍ୱାଭାବିକ । ତେଣୁ ଆଜି ସାହିତ୍ୟରେ ସେହି ଚିନ୍ତାଧାରାର ପୁନରାବୃତ୍ତି କେତେକାଂଶରେ ଦୃଷ୍ଟିଗୋଚର ହେଲାଣି । ଏହା ଏକ ନିଶ୍ଚିତ ଶୁଭ ସୂଚନା ।

---

# ରାଜନୀତି ଓ ସାହିତ୍ୟ

ଗ୍ରୀକ୍ ଦାର୍ଶନିକ ପ୍ଲେଟୋଙ୍କ ମତରେ "Art is imitation of the life". ଜୀବନ ସହିତ ସାହିତ୍ୟର ସମ୍ପର୍କ ଯେ ଅତି ଘନିଷ୍ଠ ଏବଂ ଅଚ୍ଛେଦ୍ୟ —ଏହା ସର୍ବବାଦୀସମ୍ମତ । ଜୀବନକୁ ବାଦଦେଇ ସାହିତ୍ୟର ଅସ୍ତିତ୍ୱକୁ ସ୍ୱୀକାର କରାଯାଇ ପାରେନା । ମଣିଷ ସାମାଜିକ ପ୍ରାଣୀ । ସମାଜର ସୁଖ, ଦୁଃଖ ସହିତ ବ୍ୟକ୍ତିଗତ ଜୀବନ ସଂଶ୍ଳିଷ୍ଟ । ତେଣୁ ସମାଜର ସର୍ବାଙ୍ଗୀନ କଲ୍ୟାଣ ପାଇଁ ଶିଳ୍ପୀ ତା'ର ଅପୂର୍ବ ଶିଳ୍ପ ସୃଷ୍ଟି କରିଥାଏ ଏବଂ ବୈଜ୍ଞାନିକ କଠୋର ଅଧ୍ୟବସାୟ କରି ବିଜ୍ଞାନର ଅଗ୍ରଗତି କରେ । କିନ୍ତୁ ସମାଜକୁ ଗଢି, ସମାଜକୁ ପରିପୁଷ୍ଟ କରିଥାଏ ସାହିତ୍ୟିକ । ଜନ ଜୀବନର ଶତ, ସହସ୍ର ଆଶା, ଆକାଂକ୍ଷାକୁ ନୂଆ ନୂଆ ରୂପଦେଇ ସାହିତ୍ୟରେ ରୂପାୟିତ କରିଥାଏ ସାହିତ୍ୟିକ ।

ତେବେ ଏକଥା ଯଦି ସତ୍ୟ, ତାହାହେଲେ ଦେଶର ସମାଜ ଓ ସାମାଜିକ ଜୀବନର ଯେଉଁ ପରିବର୍ତ୍ତନ ପରିଲକ୍ଷିତ ହୁଏ, ଲେଖକର ଚିନ୍ତାଧାରାରେ ମଧ୍ୟ ପରିବର୍ତ୍ତନ ଦେଖାଦେବା ସ୍ୱାଭାବିକ । ଲେଖକ ଯୁଗର ରୁଚି, ଚିନ୍ତା ପ୍ରତି ସଜାଗ ରହି ସାହିତ୍ୟ ସୃଷ୍ଟି କରି ବସେ । ଯୁଗ ଧର୍ମକୁ ଏଡ଼ିଦେଇ ସାହିତ୍ୟ ସୃଷ୍ଟି ହୋଇପାରେନା । ବ୍ୟକ୍ତି ଏକ ସାମାଜିକ ପ୍ରାଣୀ । ସମାଜର ବିଧି, ନିଷେଧଦ୍ୱାରା ବ୍ୟକ୍ତିଗତ ଜୀବନ ନିୟନ୍ତ୍ରିତ ଏବଂ ସମାଜର ଆଇନ୍‌କାନୁନ୍, ଶୃଙ୍ଖଳା ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ । ରାଷ୍ଟ୍ରନୀତିକୁ ବାଦଦେଇ ସାମାଜିକ ସଂସ୍ଥା ତିଷ୍ଠି ପାରେନା ଏବଂ ସାମାଜିକ ଚିନ୍ତା ଓ ଶୃଙ୍ଖଳାକୁ ଛାଡ଼ିଦେଲେ ବ୍ୟକ୍ତି ତା'ର ବ୍ୟକ୍ତିଗତ ଜୀବନକୁ ଶୃଙ୍ଖଳାର ସହିତ ବିକାଶ କରିପାରିବ ନାହିଁ । ତେଣୁ ଏହିସବୁ ଦୃଷ୍ଟିରୁ ଯୁଗର ପ୍ରୟୋଜନକୁ ଚାହିଁ 'ଯୁଗ ସାହିତ୍ୟ' ସୃଷ୍ଟି ହେବା ସ୍ୱାଭାବିକ ।

ଆଜ ସାହିତ୍ୟକୁ ବାସ୍ତବାଭିମୁଖୀ କରିବା ହେଉଛି ଯୁଗଧର୍ମ । ଫରାସୀ ବିପ୍ଳବ, ଶିଳ୍ପ-ବିପ୍ଳବ ଏବଂ ଦୁଇଟି ମହାଯୁଦ୍ଧ ପରେ ପରେ ଚିନ୍ତା ରାଜ୍ୟରେ ଏକ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି । ଆଜ କୁହାଯାଉଛି, "ଲେଖକ ଆଖି ବୁଜି ସ୍ୱପ୍ନ ଦେଖିବାର ବେଳ ବିତିଗଲାଣି, ଆଖି ଖୋଲି ସେ ଦୁନିଆକୁ ଚାହୁଁ ସମାଜର ବିଭିନ୍ନ ସମସ୍ୟା ପ୍ରତି ସଜାଗ ରହୁ; ଫୁଟପାଥ୍‌ର ଯେଉଁ ଅବହେଳିତ ଜୀବ ପେଟପାଇଁ ଆର୍ତ୍ତନାଦ କରୁଛି ତାକୁ ଶୁଣୁ, ଏବଂ କାରଖାନାର ମଜୁରିଆ ନିଜର ଦାବୀ ହାସଲ ପାଇଁ ଯେପରି ଭାବେ ଧର୍ମଘଟର ସ୍ଲୋଗାନ୍ ଦେଇ ଚାଲିଛି, ସେଇ ଦାବୀ ପ୍ରତି ସହାନୁଭୂତି ଦେଖାଉ ।"

ଆଜ ବାସ୍ତବିକ ସାହିତ୍ୟ ଜୀବନର ବିଭିନ୍ନ ସମସ୍ୟାକୁ କେନ୍ଦ୍ର କରି ସାହିତ୍ୟ ସୃଷ୍ଟି କରିବାରେ ତତ୍ପର । ଆଜର ଏ ବସ୍ତୁତାନ୍ତ୍ରିକ ଦୁନିଆରେ କ୍ଷଣ କ୍ଷଣକେ ଯେଉଁ ସମସ୍ୟା ଦେଖାଦେଉଛି ତା'ର ସମାଧାନ ପାଇଁ ଲେଖକ ବ୍ୟାକୁଳ ହେବା ସ୍ୱାଭାବିକ । କାରଣ ସମାଜକୁ ସଂସ୍କାର କରି ସାମାଜିକ ଜୀବନକୁ ସୁସ୍ଥ କରିବା ଦିଗରେ ଲେଖକର ଯଥେଷ୍ଟ କର୍ତ୍ତବ୍ୟ ରହିଛି ।

ଯୁଗଧର୍ମ ପ୍ରତି ଦୃଷ୍ଟି ରଖି ଲେଖକ ସାହିତ୍ୟ ସାଧନା କଲାବେଳେ ସ୍ୱତଃ ସେ ରାଜନୀତି ବା ରାଷ୍ଟ୍ରନୀତିର ସମ୍ପର୍କରେ ଆସିଯାଏ । ଯଦି କୌଣସି ଏକ ଦେଶର କି ସମାଜର ନିର୍ଦ୍ଦିଷ୍ଟ ସମସ୍ୟା ରହିଛି, ତେବେ ସେହି ସମସ୍ୟାର ଚିତ୍ର ଦେବା ସଙ୍ଗେ ସଙ୍ଗେ ସମାଧାନ ପାଇଁ ପନ୍ଥା ନିର୍ଦ୍ଦେଶ କରି ରାଷ୍ଟ୍ରନୀତିକୁ ସମାଲୋଚନା କରିଥାଏ ଲେଖକ । ପୁଣି ରାଷ୍ଟ୍ରନୀତିର ଅଦଳ ବଦଳରେ ସେଇ ସମସ୍ୟା ଯେତେବେଳେ ଦେଖା ଦିଏନି, ଲେଖକକୁ ସେହି ରାଷ୍ଟ୍ରନୀତିର ଜୟଗାନ କରିବା ପାଇଁ ପଡ଼ିଥାଏ । ଆଜ ଶୋଷଣହୀନ, ଶ୍ରେଣୀହୀନ ସମାଜ ପାଇଁ ଯେତିକି ସେ ବ୍ୟସ୍ତ; ସାମ୍ୟବାଦୀ ଚିନ୍ତାର ପରିପ୍ରକାଶ ପାଇଁ ସେତିକି ଲେଖକର ମନ ଉଦ୍‌ବେଳିତ ।

ଯାହା ସାର୍ଥକ ସୃଷ୍ଟି, ସମାଜଠାରୁ ତାହା କେବେହେଲେ ବିଚ୍ୟୁତ ନୁହେଁ; ପୁଣି ଭବିଷ୍ୟତରେ ମଧ୍ୟ ତାହା ସମାଜଠାରୁ ଦୂରରେ ରହି ନପାରେ । କାରଣ କୌଣସି ଏକ ଯୁଗର ସାମାଜିକ ଜୀବନର ମୋଟାମୋଟି

ପରିଚୟ ନପାଇଲେ ସେହି ଯୁଗର ସାହିତ୍ୟର ପରିଚୟ ପାଇବା ଅସମ୍ଭବ । ତେଣୁ ସମାଜର ବିବର୍ତ୍ତନ ସହିତ ସାହିତ୍ୟ ବିବର୍ତ୍ତିତ ହେବା ସ୍ୱାଭାବିକ ।

ଆଜି ବିଶ୍ୱର ସମଗ୍ର ସାମାଜିକ ଜୀବନରେ ରାଜନୀତି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ମନୀଷୀ କାର୍ଲ ମାର୍କସ୍‌ଙ୍କଠାରୁ ଆରମ୍ଭ କରି ବିଭିନ୍ନ ରାଜନୀତିଜ୍ଞମାନଙ୍କ ମତରେ "ସଂଘର୍ଷ ଓ ବିପ୍ଳବ ଦୃଷ୍ଟିରୁ ରାଜନୀତି ଓ ସାହିତ୍ୟ ସମଧର୍ମୀ" । ଏକଦା ସାମାଜିକ ଜୀବନରେ ଧର୍ମ ଯେପରି ପରମ ସତ୍ୟ ଥିଲା, ଆଜି ଠିକ୍ ସେହିପରି ସାମାଜିକ ଜୀବନରେ ରାଜନୀତିହିଁ ପରମ ସତ୍ୟରୂପେ ବିବେଚିତ । କିନ୍ତୁ ସେହି ଧର୍ମାଧର୍ମକୁ କେନ୍ଦ୍ର କରି **Bunyan** ଙ୍କ **Pilgrims Progress** ବା ମିଲ୍‌ଟନଙ୍କ **'Paradise Lost'** ବା ବିଖ୍ୟାତ କବି ଦାନ୍ତେଙ୍କ **'Divine Comedy'** ପରି ମହତ୍ ସାହିତ୍ୟ ସୃଷ୍ଟି ସମ୍ଭବପର ହୋଇଥିବାବେଳେ ରାଜନୀତିକୁ କେନ୍ଦ୍ର କରି ସାର୍ଥକ ଓ ଚିରନ୍ତନ ସାହିତ୍ୟ ସୃଷ୍ଟି ହୋଇପାରୁ ନାହିଁ କାହିଁକି ? ପୁଣି ଯୁଗ ସାହିତ୍ୟ ଓ ଚିରନ୍ତନ ସାହିତ୍ୟ ଭିତରେ ମୌଳିକ ପ୍ରଭେଦ କଣ ? ବାସ୍ତବିକ ଏହିସବୁ ପ୍ରଶ୍ନ ପ୍ରଣିଧାନଯୋଗ୍ୟ । କିନ୍ତୁ ଏହାର ଉତ୍ତର ପାଇଁ ଖୋଜି ବସିଲେ ଜଣାଯାଏ, ସାହିତ୍ୟ ସୃଷ୍ଟି ପାଇଁ ମୁଖ୍ୟତଃ ଆବଶ୍ୟକ ମାନବର ଅନୁଭୂତି, ପ୍ରକାଶଭଙ୍ଗୀ ଏବଂ ଜୀବନ ଦର୍ଶନ । ଏହା ପ୍ରକାଶ ନପାଇ କେବଳ କିଛିକ ରାଜନୀତିର ପରିପ୍ରଚାର କରାଗଲେ, ତାହା ପ୍ରଚାର ସାହିତ୍ୟରୂପେ ପରିଚିତ ହୋଇପାରେ । କିନ୍ତୁ ତାର ଚିରନ୍ତନ ମୂଲ୍ୟ ରହେ ନାହିଁ । ଚିରନ୍ତନ ସାହିତ୍ୟ ପାଇଁ ପ୍ରୟୋଜନ ସାର୍ବଜନୀନତା । ସାର୍ବଜନୀନ ଚିନ୍ତା ଯେଉଁ ସାହିତ୍ୟରେ ଆତ୍ମପ୍ରକାଶ କରେ, ସେହି ସାହିତ୍ୟ ବାସ୍ତବିକ ଶାଶ୍ୱତ । ତାହା କୌଣସି କାଳେ ରାଷ୍ଟ୍ରନୀତିର ପରିବର୍ତ୍ତନ ବା ରାଜନୈତିକ ପଟ୍ଟପରିବର୍ତ୍ତନ ପ୍ରତି ଅପେକ୍ଷା କରିନଥାଏ । ରାଷ୍ଟ୍ରର ଯାହା କିଛି ନୀତିଗତ ପରିବର୍ତ୍ତନ ହେଲେ ବି ସେହି ସାହିତ୍ୟ ବିଶ୍ୱ ଦରବାରରେ ଆଦୃତ । କାରଣ ତାହା ବିଶ୍ୱର ମାନବ ଜୀବନର ଆଶା, ଆକାଂକ୍ଷାକୁ ଓ ବାସ୍ତବ ଅନୁଭୂତିକି ନେଇ ପ୍ରକାଶ ପାଇଥାଏ ବୋଲି । ଆଧୁନିକ ସାହିତ୍ୟରେ ଅବହେଳିତ ନରନାରୀ ପ୍ରତି ସହାନୁଭୂତି ରହିଛି ସତ, କିନ୍ତୁ ଦୁଃଖର କଥା, ସେହି ସହାନୁଭୂତି ମୂଳରେ ବା ଅନୁଭୂତି ମଧ୍ୟରେ ପ୍ରାଣ ଥିଲପରି ବୋଧ ହୁଏନାହିଁ । ସ୍ରଷ୍ଟାଙ୍କୁ ବାହିଁ ସୃଷ୍ଟି, ସ୍ରଷ୍ଟାର

ମନ ନିର୍ମଳ ହେଲେ, ଜୀବନର ସତ୍ୟତାକୁ ସେ ଉପଲବ୍ଧି କଲେ, ତା'ର ସୃଷ୍ଟି ସଫଳ ହୋଇଥାଏ । କିନ୍ତୁ ସାଧନା ମୂଳରେ ଯଦି ନିଷ୍ଠୁର ଅଭାବ, ତେବେ ସୃଷ୍ଟି ସାର୍ଥକ ହେବ କିପରି ?

ଦୁଃଖର କଥା, ଆଜି ଲେଖକ ଅତି ନିଷ୍ଠାର ସହିତ ସାହିତ୍ୟ ସାଧନା କଲାବେଳେ ନାନା ବିପଦର ସମ୍ମୁଖୀନ ହେଉଛି । ସାହିତ୍ୟ ଉପରେ ରାଜନୀତିର ପ୍ରଭାବ ପଡ଼ିବା ସ୍ୱାଭାବିକ କିନ୍ତୁ ରାଷ୍ଟ୍ରନାୟକମାନଙ୍କର ଅବାଞ୍ଛିତ ହସ୍ତକ୍ଷେପ ସାଧନାର ମାର୍ଗକୁ ରୁଦ୍ଧ କରିଦିଏ ଏବଂ ବ୍ୟକ୍ତି ତା'ର ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ଜଳାଞ୍ଜଳି ଦେବାପାଇଁ ବେଳେବେଳେ ବାଧ୍ୟ ହୁଏ । ଆଜି ସମସ୍ତ ବୁଦ୍ଧିଜୀବୀ ଶ୍ରେଣୀର ଘୋରତର ଦୁର୍ଦ୍ଦିନ ପଡ଼ିଅଛି । ଏହାର ପ୍ରମାଣ ସୋଭିଏଟ୍ ରାଷ୍ଟ୍ର ଓ ଲାଲ ଚୀନର ରାଷ୍ଟ୍ର ବ୍ୟବସ୍ଥାରେ ଯଥେଷ୍ଟ ମାତ୍ରାରେ ମିଳେ ।

ଲେଖକର ସ୍ୱାଧୀନ ଚିନ୍ତା, ମନୋଜ୍ଞ, ମଧୁମୟ କଳ୍ପନା ଓ ଜୀବନ ଦର୍ଶନ ଉପରେ ରାଷ୍ଟ୍ର ଯଦି ସୀମା ନିର୍ଦ୍ଧାରଣ କରି ବସେ ଏବଂ ସେମାନଙ୍କ ଅନ୍ତରର ବାଣୀ ପ୍ରତି କର୍ଣ୍ଣପାତ କରେ ନାହିଁ, ତାହାହେଲେ ଶିଳ୍ପୀ ସମାଜ ବଞ୍ଚିବ କିପରି ? ଶାଶ୍ୱତ ଚିନ୍ତାରାଜିର ପରିପ୍ରକାଶ ହେବ କିପରି ? ରାଷ୍ଟ୍ରନାୟକମାନେ ଅଙ୍ଗୁଳି ନିର୍ଦ୍ଦେଶ କରି ଯଦି ଲେଖକକୁ ଏକ ନିର୍ଦ୍ଦିଷ୍ଟ ପରିସର ଭିତରେ ଗତି କରିବା ପାଇଁ କହନ୍ତି, ତେବେ ତା'ଠୁ ବଳି ଦୁର୍ଭାଗ୍ୟ ଆଉ କଣ ଥାଇପାରେ ? ତେବେ ଏକଥା ସ୍ୱୀକାର୍ଯ୍ୟ ଯେ ଲେଖକ ଯଦି ସମାଜକୁ କଳୁଷିତ କରି, ଜାତୀୟତାକୁ ନଷ୍ଟ କରି ନିଜର ସ୍ୱାର୍ଥ ସାଧନ ଦିଗରେ ଆଗେଇଥାଏ, ତାହାହେଲେ ସେହି ଦୋଷ ଅକ୍ଷମଣୀୟ ।

ଏ ପ୍ରସଙ୍ଗରେ ନୋବେଲ୍ ପୁରସ୍କାରପ୍ରାପ୍ତ ବରେଣ୍ୟ ଲେଖକ ବୋରିସ୍ ପାଷ୍ଟରନାକଙ୍କ ସାହିତ୍ୟ ସାଧନା ପ୍ରଣିଧାନଯୋଗ୍ୟ । ତାଙ୍କର ବିଖ୍ୟାତ ଉପନ୍ୟାସ **"Doctor Zhivago"** ସାରସ୍ୱତ ଭଣ୍ଡାରର ଏକ ଅମୂଲ୍ୟ ରତ୍ନରୂପେ ବିବେଚିତ । କିନ୍ତୁ ବାସ୍ତବକ୍ଷେତ୍ରରେ ସେହି ଅମୂଲ୍ୟ ରତ୍ନର ବିନିମୟରେ ସେ ପାଇଲେ କ'ଣ—ନିର୍ଯ୍ୟାତନା ··· ଲାଞ୍ଛନା । ଉପନ୍ୟାସଟି ଶ୍ରେଷ୍ଠ ମାନବିକତାର ଜୀବନ୍ତ ପ୍ରତୀକ । ମାନବାତ୍ମା ଓ ସତ୍ୟ ସନ୍ଧାନର ଚିତ୍ର ଏଥିରେ ପ୍ରତିଫଳିତ, ମାନବ ଜୀବନର ରହସ୍ୟ ଉଦ୍ଘାଟିତ ।

କିନ୍ତୁ ଦୁର୍ଭାଗ୍ୟବଶତଃ; ମୋଟ୍ ଏଠି ରାଷ୍ଟ୍ର ବ୍ୟବସ୍ଥାର ବିଧି, ନିଷେଧ ଏବଂ ମତବାଦ ସହିତ ଲେଖକଙ୍କର ଚିନ୍ତାଧାରାର ସଂଘର୍ଷ ଘଟିଲା । ଲେଖକ ଯଦି ଜୀବନର ମୌଳିକ ମୂଲ୍ୟବୋଧ ପ୍ରତି ଆତ୍ମ ସଚେତନ ନହୁଏ, ସ୍ୱାଧୀନ ମାନବିକ ଚିନ୍ତାର ପରିପ୍ରକାଶ ନ କରେ ଏବଂ ତାହା ପ୍ରକାଶ କଲାବେଳେ ରାଷ୍ଟ୍ର-ବ୍ୟବସ୍ଥା ତାର ପ୍ରତିରୋଧ କରେ, ତେବେ ସାମାଜିକ ଜୀବନର ବିକାଶ ସମ୍ଭବ ହେବ କିପରି ?

ତେଣୁ ଗଣତାନ୍ତ୍ରିକ ରାଷ୍ଟ୍ରରେ ନାଗରିକମାନଙ୍କ ମୌଳିକ ଅଧିକାର ଓ ଦାୟିତ୍ୱ ପ୍ରତି ଯେତିକି ସମ୍ମାନ ଦିଆଯାଉଛି, ଲେଖକର ଚିନ୍ତାଧାରା ପ୍ରତି ସେତିକି ସମ୍ମାନ ପ୍ରକାଶ ପାଇବା ଉଚିତ । ଲେଖକର ସ୍ୱାଧୀନ ଚିନ୍ତାକୁ ରାଷ୍ଟ୍ର ଯଦି ପଦେ ପଦେ ନିୟନ୍ତ୍ରଣ କରି ବସେ, ତେବେ ସାର୍ଥକ ସାହିତ୍ୟ ସୃଷ୍ଟି ହେବା ବିଡ଼ମ୍ବନା ମାତ୍ର ।

ସ୍ରଷ୍ଟା ସତ୍ୟ, ଶିବ ଓ ସୁନ୍ଦରର ପୂଜାରୀ । ତେଣୁ ସତ୍ୟ, ଶିବ ଓ ସୁନ୍ଦରର ପରିପ୍ରକାଶ ସାହିତ୍ୟରେ ହୋଇଥାଏ । ଯେ କୌଣସି ଦେଶ ଓ ସମାଜର ସମୃଦ୍ଧି ଏହା ଉପରେ ନିର୍ଭର କରେ । କେବଳ ବିଜ୍ଞାନର ଅଗ୍ରଗତିରେ ମନୋନିବେଶ କରି ଆଧ୍ୟାତ୍ମିକ ଚେତନା ଓ ମାନବିକତାଠାରୁ ଦୂରେଇ ଗଲେ, ଦେଶ ପ୍ରଗତି ପଥରେ ଆଗେଇ ପାରିବ ନାହିଁ । କାରଣ ଗଣତାନ୍ତ୍ରିକ ରାଷ୍ଟ୍ର ବିଶେଷ ଭାବେ ଜାତୀୟ ଚରିତ୍ର ଓ ଲୋକମତ ଉପରେ ପ୍ରତିଷ୍ଠିତ । ସମାଜର ସାମାଜିକ ଜୀବନ ଯେତିକି ଉନ୍ନତ, ଶୃଙ୍ଖଳିତ ଏବଂ ଶାଶ୍ୱତ ହେବ, ନୈତିକ ରାଷ୍ଟ୍ରର ମର୍ଯ୍ୟାଦା ବଢ଼ିବ । ତେଣୁ ଏହିସବୁ ଦୃଷ୍ଟିରୁ ସାହିତ୍ୟ ଓ ସାହିତ୍ୟିକର ମାନଦଣ୍ଡ ବୃଦ୍ଧି ପାଇବା ଉଚିତ । ରାଷ୍ଟ୍ରର ଶାସନ ବ୍ୟବସ୍ଥା ସାହିତ୍ୟକୁ ଏକ ସୀମିତ ପରିସର ଭିତରେ ଆବଦ୍ଧ କରିବା ଅନୁଚିତ ।

ସାହିତ୍ୟିକ ଜନସମାଜର କଲ୍ୟାଣ ତଥା ମାନବିକତାର ଅଭ୍ୟୁଦୟ ପାଇଁ ସ୍ୱାଧୀନ ଚିନ୍ତା ପ୍ରକାଶ କରନ୍ତୁ । ସମାଜ ଗଠନ ଦିଗରେ [illegible] ସାହିତ୍ୟ ପ୍ରକାଶ କରି ନିଜର ବ୍ୟକ୍ତିସ୍ୱାତନ୍ତ୍ର୍ୟ ପ୍ରତି ସଜାଗ ରହି [illegible] ପଥର ପଥିକ ହେଉ—ଏତିକି ମାତ୍ର ଆଶା !

--- ୦ ---

# ଉପନ୍ୟାସରେ
# ଚିନ୍ତାଧାରାର କ୍ରମ ବିବର୍ତ୍ତନ

ବିଶିଷ୍ଟ ପାଶ୍ଚାତ୍ୟ ସାହିତ୍ୟିକ ହେନେରୀ ଜେମସ୍ (Henry James) ଙ୍କ ଭାଷାରେ **"A novel is in its broadest definition a personal, a direct impression of life."** ବ୍ୟକ୍ତିର ସଚେତନ ଓ ଅର୍ଦ୍ଧଚେତନ ଆତ୍ମା ଉପରେ ବାହାରର ଘଟଣା ଆଘାତ କଲେ ମନରେ ଯେଉଁସବୁ ନିଗୂଢ଼ ଅନୁଭୂତି ଜାଗ୍ରତ ହୁଏ, ତାହାହିଁ ଉପନ୍ୟାସରେ ରୂପାୟିତ । କୌଣସି ଏକ କାହାଣୀକୁ ଅବଲମ୍ବନ କରି ଲେଖକ ନିଜର ଜୀବନଦର୍ଶନ ଓ ଅନୁଭୂତିକୁ ଶିଳ୍ପରେ ରୂପାୟିତ କଲେ ଉପନ୍ୟାସ ହୋଇଥାଏ । ଉପନ୍ୟାସର ଆକୃତି, ପ୍ରକୃତି ଓ ଗତି କୌଣସି ସୀମା ମଧ୍ୟରେ ଆବଦ୍ଧ ନୁହେ । ମାନବ ମନର ଯେ କୌଣସି ବିଷୟ ଉପନ୍ୟାସରେ ସ୍ଥାନ ଦିଆଯାଇପାରେ । ଆଧୁନିକ ଶିଳ୍ପୀମନର ଅପୂର୍ବ ସୃଷ୍ଟି ହିଁ ଉପନ୍ୟାସ । ଜଣେ ବିଶିଷ୍ଟ ବଙ୍ଗୀୟ ସମାଲୋଚକଙ୍କ ମତରେ ଉପନ୍ୟାସ ସତେ ଯେମିତି ଏକ "ବିଚିତ୍ର ରାଗିଣୀର ଅର୍କେଷ୍ଟ୍ରା" । ଏଥିରେ ଜୀବନର ବହୁ ରାଗିଣୀ ବା ବ୍ୟାପକତା ଦେଖିବାକୁ ମିଳେ ।

ସମାଜରେ ଯେଉଁଦିନ ଧନୀ, ଦରିଦ୍ର ଓ ଅବହେଳିତ ବ୍ୟକ୍ତିର ସ୍ୱାଧୀନତା ସ୍ୱୀକୃତ ହେଲା, ସେହିଦିନୁ ଉପନ୍ୟାସର ଜନ୍ମ । ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ଗଣତାନ୍ତ୍ରିକ ଅଧିକାର ସୁଦୃଢ଼ ହେବା ଫଳରେ ପ୍ରଥମେ ସେହି ଦେଶରେ ଉପନ୍ୟାସ ଜନ୍ମଲାଭ କରିଥିଲା । ତେଣୁ ଗଣତନ୍ତ୍ର ସଙ୍ଗେ ଉପନ୍ୟାସର ଘନିଷ୍ଠ ସମ୍ପର୍କ ରହିଅଛି । ଶିଳ୍ପ ବିପ୍ଳବ ଓ ଫରାସୀ ବିପ୍ଳବ ଯୋଗୁଁ ମଧ୍ୟବିତ୍ତ ଶ୍ରେଣୀର ସାମାଜିକ ପ୍ରତିଷ୍ଠା ସୁଦୃଢ଼ ହେଲା । ସାଧାରଣ ଜୀବନର ଗତି ବିଚିତ୍ର, ସମସ୍ୟା ଓ ଅନୁଭୂତିକୁ କାବ୍ୟ,

ମହାକାବ୍ୟ ଅପେକ୍ଷା ନାଟକ ଓ ଉପନ୍ୟାସରେ ରୂପ ଦେବା ସମ୍ଭବ ହେଲା । ସାମନ୍ତ ଶ୍ରେଣୀ ପ୍ରତି ଜନସାଧାରଣଙ୍କ ବିତୃଷ୍ଣା ଏବଂ ଅନାସ୍ଥା ଭାବ ଜାଗ୍ରତ ହେଲା । Scot, Hugo, Dickens ଓ Duma ପ୍ରଭୃତି ସାହିତ୍ୟିକମାନେ ନାନାଭାବରେ ବ୍ୟକ୍ତି ଜୀବନକୁ କେନ୍ଦ୍ର କରି ଉପନ୍ୟାସ ଲେଖିବା ଆରମ୍ଭ କଲେ । ପାଶ୍ଚାତ୍ୟ ସଂସ୍କୃତିର କ୍ରମ ବିବର୍ତ୍ତନ ଫଳରେ ଊନବିଂଶ ଶତାବ୍ଦୀର ଶେଷ ପାଦରେ ଆମ ସାହିତ୍ୟରେ ଉପନ୍ୟାସ ଲେଖା ଆରମ୍ଭ ହୁଏ । ଗୋପାଳବଲ୍ଲଭ, ରାମଶଙ୍କର ଏବଂ ଫକୀରମୋହନ ପ୍ରଭୃତି ସାହିତ୍ୟିକଙ୍କ ଆବିର୍ଭାବ ହୁଏ ଠିକ୍ ଏହି ସମୟରେ । ବ୍ୟକ୍ତି ଜୀବନ ହିଁ ଏମାନଙ୍କ ଉପନ୍ୟାସର ପ୍ରଧାନ ବିଷୟବସ୍ତୁ ଥିଲା ।

ରାମଶଙ୍କରଙ୍କ 'ସୌଦାମିନୀ', 'ବିବାସିନୀ', ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ବା 'ମାମୁଁ' ଉପନ୍ୟାସରେ ପରୋକ୍ଷଭାବେ ନାନା ସାମାଜିକ ଅବସ୍ଥାର ଅବତାରଣା କରାଯାଇଥିଲେ ହେଁ ବ୍ୟକ୍ତିର ଉତ୍‌ଥାନ ଓ ପତନ ହିଁ ଉପନ୍ୟାସର ପ୍ରଧାନ ବିଷୟବସ୍ତୁ । ବ୍ୟକ୍ତିଗତ ଜୀବନର ନାନା ଅନ୍ତର୍ମୁଖୀ ଓ ବହିର୍ମୁଖୀ ଦ୍ୱନ୍ଦ୍ୱକୁ ଭିତ୍ତିକରି ଏହି ସମୟରେ ବିଭିନ୍ନ ଉପନ୍ୟାସ ଲେଖାଯାଇଛି । ରାମଶଙ୍କର ଓ ଫକୀରମୋହନ ଅତ୍ୟାଚାରୀ ଓ ଅତ୍ୟାଚାରିତ, ଶୋଷକ ଓ ଶୋଷିତ ସମ୍ପ୍ରଦାୟର ଦ୍ୱନ୍ଦ୍ୱକୁ ଅତି ସୁନ୍ଦରଭାବେ ରୂପାୟିତ କରିଅଛନ୍ତି । ଫକୀର-ମୋହନ ଅବଶ୍ୟ ସମାଜକୁ ଅବହେଳା କରିନାହାନ୍ତି; ତାଙ୍କ ଉପନ୍ୟାସରେ ପ୍ରାସଙ୍ଗିକ ଏବଂ ଅପ୍ରାସଙ୍ଗିକ ନାନା ଚିତ୍ର ଦେଖିବାକୁ ମିଳେ । ତେବେ ବିଷୟବସ୍ତୁର ବିକାଶ ଏବଂ ପରିଣତି ପାଇଁ ସମାଜର ବିଶେଷ ବିଶେଷ ବ୍ୟକ୍ତିମାନଙ୍କୁ ଦାୟୀ କରିଅଛନ୍ତି । କିନ୍ତୁ ବ୍ୟକ୍ତି ଯେ ସମାଜର ଅଂଶ ଏବଂ ବ୍ୟକ୍ତି ଜୀବନର ଗତିବିଧି ଯେ ସମାଜର ଶତ ସହସ୍ର ବିଧି ନିଷେଧଦ୍ୱାରା ପରିଚାଳିତ, ଏକଥା ଫକୀରମୋହନ ଉତ୍ତମରୂପେ ପରୀକ୍ଷା କରିନାହାନ୍ତି । ମାନବବାଦୀ ଫକୀରମୋହନ ମାନବିକତାର ଉପାସନାକୁ ଜୀବନର ଶ୍ରେଷ୍ଠ ବ୍ରତରୂପେ ମଣିଥିଲେ । ଆର୍ଯ୍ୟ ସଂସ୍କୃତି ଓ ପରମ୍ପରା ପ୍ରତି ତାଙ୍କର ଯଥେଷ୍ଟ ଆସ୍ଥାଥିଲା । ଗାନ୍ଧୀ ଓ ଟଲଷ୍ଟୟଙ୍କ ଚିନ୍ତାଧାରାରେ ସେ ଅନୁପ୍ରାଣିତ ହୋଇ ବ୍ୟକ୍ତିବିଶେଷର ହୃଦୟ ପରିବର୍ତ୍ତନ ଚାହୁଁଥିଲେ, ପାପୀକୁ ଘୃଣା ନକରି ପାପକୁ ଘୃଣା କରୁଥିଲେ ।

ଫକୀରମୋହନଙ୍କ କର୍ମଫଳରେ ଦୃଢ଼ବିଶ୍ୱାସ ଥିଲା । କିନ୍ତୁ ସେ ବାର୍ଦ୍ଧକ୍ୟରେ ଭାଗ୍ୟବାଦୀ ହୋଇପଡ଼ିଲେ । ମଙ୍ଗରାଜ କର୍ମଫଳ ଭୋଗ କରିଛନ୍ତି, କିନ୍ତୁ ନଟବର ଦାଶ କର୍ମଫଳ ଭୋଗ କରିନାହାନ୍ତି । ସେ ଭାଗ୍ୟବାଦୀ ହେଲେ ବି ସମାଜ ଜୀବନର ଶୃଙ୍ଖଳା ଓ ବିଧିରକ୍ଷା ପାଇଁ କର୍ମଫଳର ଗୌରବ ପ୍ରତିପାଦନ କରିଛନ୍ତି । ତାଙ୍କର ଦୃଢ଼ବିଶ୍ୱାସ, 'ଭାଗ୍ୟବାଦ' ସମାଜ ସଚେତନ କରେ ନାହିଁ ଏବଂ ଏହା ଜୀବନର ବିକାଶରେ ଅନୁକୂଳ ନୁହେଁ ।

ଡକ୍ଟର ନଟବର ସାମନ୍ତରାୟଙ୍କ ମତରେ "ସେନାପତି-ସୃଷ୍ଟି ସେନାପତି ଜୀବନର ଶୈଳ୍ପିକ ଅଭିବ୍ୟକ୍ତି ମାତ୍ର । ତାଙ୍କ ଜୀବନ-ଦର୍ଶନ ହେଉଛି ମାନବଧର୍ମୀ—ଏହାହିଁ ତାଙ୍କ ସମସ୍ତ କୃତିର ସର୍ବଶେଷ ସର୍ବଶ୍ରେଷ୍ଠ ଅନ୍ତର୍ଧ୍ୱନି ।" ଫକୀରମୋହନଙ୍କ ଉପନ୍ୟାସର କଥାବସ୍ତୁ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଡକ୍ଟର ସାମନ୍ତରାୟ ପୁଣି କହିଛନ୍ତି—"ଶୋଷଣ ହିଁ ସେନାପତିଙ୍କ ଉପନ୍ୟାସ-ବିଷୟବସ୍ତୁର ମୂଳକେନ୍ଦ୍ର । କିନ୍ତୁ ଏ ଶୋଷଣର ଚମତ୍କାରିତା—ତାର ଆରମ୍ଭ, ବିକାଶ ଓ ଅବସାନରେ କଳାଗତ ବୈଶିଷ୍ଟ୍ୟ—'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ସର୍ବଶ୍ରେଷ୍ଠ ଆସନ ଅଧିକାର କରିବସିଛି ।"

ଭିକ୍ଟୋରିଆ ଯୁଗ (Victorian Period)ର ବିଶିଷ୍ଟ ଔପନ୍ୟାସିକ ଚାର୍ଲସ୍ ଡିକେନ୍‌ସ ଓ ପଡ଼ୋଶୀ ବଙ୍ଗୀୟ ଔପନ୍ୟାସିକ ବଙ୍କିମଙ୍କ ଚିନ୍ତାଧାରା ଓ ରଚନା ଶୈଳୀ ସହିତ ଫକୀରମୋହନଙ୍କ ଚିନ୍ତାଧାରା ଓ ରଚନା ଶୈଳୀର ଯଥେଷ୍ଟ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ଭିକ୍ଟୋରିଆ ଯୁଗର ଔପନ୍ୟାସିକମାନେ ରଚନାରେ ନୈତିକତା ଓ ଶାଳୀନତା ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ସମାଲୋଚକଙ୍କ ମତରେ, "Dickens wrote always under a sense of high responsibility to the accented conventions of the middle class morality." ଫକୀରମୋହନ ମଧ୍ୟ ରଚନାରେ ଏହିଭଳି ଶାଳୀନତା ପ୍ରତି ସଚେତନ ଥିଲେ ।

J. B. Priestly ମଧ୍ୟ ତାଙ୍କର 'The English Novel' ଗ୍ରନ୍ଥରେ ଡ଼ିକେନ୍ସଙ୍କ ସମ୍ପର୍କରେ ନିମ୍ନଲିଖିତ ମନ୍ତବ୍ୟ ପ୍ରକାଶ କରିଛନ୍ତି— "The materials of which is composed seem realistic enough, Dickens who saw and remembered everything that came his way, crammed it full of facts and acute observations; here is no vague dreamland, but a place filled with sharply detail."

ଏହି ମନ୍ତବ୍ୟ ଫକୀରମୋହନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଜୀବନର ବାସ୍ତବ ଅନୁଭୂତ ସେନାପତିଙ୍କ ସାହିତ୍ୟରେ ଅତି ସୁନ୍ଦରଭାବେ କଳାରୂପରେ ଫୁଟି ଉଠିଛି ।

ପ୍ରଥମ ମହାଯୁଦ୍ଧ ପରେ ସାମାଜିକ ଅବସ୍ଥାର ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । ସମାଜର ଅବସ୍ଥା ଅନୁସାରେ ମଣିଷର ଚିନ୍ତାସ୍ରୋତ ବି ପରିବର୍ତ୍ତିତ ହେଲା । ଯୁଦ୍ଧୋତ୍ତର ସାମାଜିକ ଜୀବନର କ୍ଷୋଭ, ତିକ୍ତ ନିରାଶା ଓ ହତାଶ ଭାବ ଏକ ନୂତନ ରୂପନେଇ ସାହିତ୍ୟରେ ପ୍ରକାଶ ପାଇଲା । ସମାଜତାନ୍ତ୍ରିକ ବାସ୍ତବତା ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ସାହିତ୍ୟକର ମୂଳ ଲକ୍ଷ୍ୟ ହେଲା । ରାଜନୈତିକ, ସାମାଜିକ ମୁକ୍ତି ପ୍ରଚେଷ୍ଟା ନେଇ ଉପନ୍ୟାସ ବାସ୍ତବଧର୍ମୀ ଭୂମିକା ଗ୍ରହଣ କଲା । ଯୁଦ୍ଧୋତ୍ତର ସମାଜର ହା ହତାଶ ଦେଖି ସେଥିରେ ବ୍ୟଥିତ ହୋଇ ଲେଖକ ଚିତ୍କାର କରି ଉଠିଲେ— "One must speak for life and growth amidst all the mass of destruction and disintegration."

ଧ୍ୱସ୍ତବିଧ୍ୱସ୍ତ ସମାଜ ବିରୁଦ୍ଧରେ ବିପ୍ଳବ ଘୋଷଣା କରିବା ସଙ୍ଗେ ସଙ୍ଗେ ଜୀବନ ଧର୍ମକରେ ଅମ୍ଳାନ ଆଶା ରଖି ଲେଖକ ଲେଖନୀ ଚାଳନା କରିବା ଆରମ୍ଭ କଲେ ।

ଆଧୁନିକ ସମାଜ ସମସ୍ୟା, ଶ୍ରେଣୀ ବୈଷମ୍ୟ, ଅର୍ଥନୈତିକ ସଙ୍କଟ, ରାଜନୈତିକ ସମସ୍ୟା ଜୀବନର ସକଳ ଅନୁଭୂତି, ଆଶା, ଆକାଂକ୍ଷାକୁ ଉପରି ତଳେ ତଳେ ଦଳିତ କରେ ତାହା ହିଁ ଯୁଦ୍ଧୋତ୍ତର ଉପନ୍ୟାସର ପ୍ରଧାନ ଉପଜୀବ୍ୟ । ସମାଜର ବିଧି ନିଷେଧ, ଶ୍ରେଣୀ ବୈଷମ୍ୟ, ଅର୍ଥନୈତିକ ଏବଂ ରାଜନୈତିକ ଦୁର୍ବିପାକ, ଚିରାଚରିତ ସଂସ୍କାର ଓ ବିଶ୍ୱାସର ନିର୍ମମ ପେଷଣରେ ବ୍ୟକ୍ତି ଜୀବନ କିପରି ଚୂର୍ଣ୍ଣୀଭୂତ ହୁଏ ଆଧୁନିକ ଯୁଗର ଉପନ୍ୟାସ ଗୁରୁଗମ୍ଭୀର ସ୍ୱରରେ ତାହା ପ୍ରଚାର କରେ । ତେଣୁ ଆମର ମାନବ ଏକାନ୍ତଭାବେ ସମାଜର ଦାସ । ଅର୍ଥନୀତି ଓ ସମାଜତତ୍ତ୍ୱ ସହିତ ମାନବର କର୍ମମୟ ଜୀବନର ନିକଟତମ ସମ୍ପର୍କ ରହିଅଛି । ଏଣୁ ସାମାଜିକ ସମସ୍ୟାର ସମାଧାନ ନହେଲେ ବ୍ୟକ୍ତି ଜୀବନର ବିକାଶ ଅସମ୍ଭବ । ଏହି ଚିନ୍ତାଧାରା ବିଶେଷଭାବେ ପ୍ରକାଶ ପାଇଲା ଆଧୁନିକ ଯୁଗର ସାହିତ୍ୟରେ ।

ମାର୍କସ୍ (Marx)ଙ୍କ ଅର୍ଥନୀତି ଏବଂ ଫ୍ରଏଡ଼ଙ୍କ ଯୌନତତ୍ତ୍ୱଦ୍ୱାରା ପ୍ରଭାବିତ ହେଲା ଆଧୁନିକ ଯୁଗର ଉପନ୍ୟାସ ଓ ନାଟକ ।

## ଫ୍ରଏଡ଼୍‌ଙ୍କ ମତବାଦ—

ଫ୍ରଏଡ଼ଙ୍କ ମତରେ ମନୁଷ୍ୟ ମନର ତିନୋଟି ସ୍ତର ଅଛି, ଯଥା— ଚେତନ, ଅର୍ଦ୍ଧଚେତନ ଓ ଅବଚେତନ । ମନୁଷ୍ୟର ଯେଉଁ ସବୁ ପ୍ରବୃତ୍ତି, ଆଶା, ଆକାଂକ୍ଷା ପରିସ୍ଥିତିର ଚାପରେ ବା ନୈତିକତାର ଚାପରେ ଆତ୍ମପ୍ରକାଶ କରିପାରେ ନାହିଁ, ସେସବୁ ଗୁଡ଼ିକ ମନର ଅବଚେତନ ସ୍ତରରେ ବ୍ୟକ୍ତିର ଚେତନା ବାହାରେ ଆତ୍ମଗୋପନ କରିଥାନ୍ତି । ମନର ଏକ ନିର୍ବାଚନ ଶକ୍ତି ଅଛି । ଏହି ଶକ୍ତି ମନର ହୀନ ପ୍ରବୃତ୍ତିକୁ ଆତ୍ମପ୍ରକାଶ କରିବାକୁ ଦିଏ ନାହିଁ; କେବଳ ଉନ୍ନତ କଳାମୂଳକ ରୂପରେ ଆତ୍ମପ୍ରକାଶ କରିବାକୁ ଦିଏ । ଶେଷରେ ଫ୍ରଏଡ଼୍ କହନ୍ତି ମନୁଷ୍ୟର ସମସ୍ତ କାର୍ଯ୍ୟମୂଳରେ ଯୌନ ପ୍ରବୃତ୍ତି ରହିଛି । ତେଣୁ ସମାଜତତ୍ତ୍ୱ ସହିତ ମାନବ ମନର ସଂଘାତ ଓ ଦ୍ୱନ୍ଦ୍ୱର ଚିତ୍ର ଦେଖିବାକୁ ମିଳେ ଆଧୁନିକ ଯୁଗର ଉପନ୍ୟାସରେ ।

ସାମାଜିକ ଓ ଅର୍ଥନୈତିକ ବାସ୍ତବତା ମଧ୍ୟର ମନସ୍ତାତ୍ତ୍ୱିକ ବାସ୍ତବତାର ନୂତନ ରୂପ ପ୍ରଥମେ ଦେଖାଦେଲା ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଫରାସୀ ସାହିତ୍ୟରେ । ଫରାସୀ ଔପନ୍ୟାସିକ Flubertଙ୍କ 'ମ୍ୟାଡ଼ାମ୍ ବୋଭାରୀ' ଉପନ୍ୟାସ ଏହି ଚିନ୍ତାଧାରା ନେଇ ବିଶ୍ୱସାହିତ୍ୟ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଥିଲା । ଇଂରେଜୀ ସାହିତ୍ୟରେ ପ୍ରଥମ ବିଶ୍ୱଯୁଦ୍ଧ ଘଟିବା ପୂର୍ବରୁ ଔପନ୍ୟାସିକ ହିସାବରେ ଗଲସ୍‌ଓ୍ୱାର୍ଦି ଓ ଡି. ଏଚ୍. ଲରେନ୍‌ସ ଖ୍ୟାତି ଲାଭ କରିଥିଲେ । ଗଲସ୍‌ଓ୍ୱାର୍ଦି ସାମାଜିକ ବାସ୍ତବତାର ଶିଳ୍ପୀ; କିନ୍ତୁ ଲରେନ୍‌ସ ସେହି ଭାବଧାରାକୁ ବର୍ଜନ କରି ଦୁଇଟି ଉପନ୍ୟାସ ଲେଖିଲେ । ପ୍ରଥମଟି 'Sons and Lovers', ଦ୍ୱିତୀୟଟି Lady Chatterley's Lover'. ତାଙ୍କ ମତରେ ସେ ଫ୍ରଏଡ଼ଙ୍କ ଯୌନତତ୍ତ୍ୱକୁ ଅନୁସରଣ କରି ଏହି ଉପନ୍ୟାସ ଲେଖିନାହାନ୍ତି କେବଳ ବୈଜ୍ଞାନିକ ତଥ୍ୟ ଓ ସାମାଜିକ ସଂସ୍ଥା ପ୍ରତି ଅବିଶ୍ୱାସ କରି ସେ ନୂତନ ତଥ୍ୟ ପ୍ରକାଶ କରିଛନ୍ତି ତାଙ୍କ ଉପନ୍ୟାସରେ । ତେଣୁ ସେ କହନ୍ତି, "My great religion is a belief in the blood, the flesh, as being wiser than the intellect." ଏହି ଦେହ ଧର୍ମର ଆଦିମ କାମନାର ପ୍ରଶସ୍ତି ଗାନ ତାଙ୍କ ଉପନ୍ୟାସରେ ଶୁଣିବାକୁ ମିଳେ ।

ବିଂଶ ଶତାବ୍ଦୀରେ ରୁଷ ଦେଶ ସାହିତ୍ୟରେ ଯେତେ ଜଣ ଔପନ୍ୟାସିକ ଦେଖା ଦେଇଛନ୍ତି ସେମାନଙ୍କ ମଧ୍ୟରେ ମ୍ୟାକସିମ୍ ଗର୍କିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ 'The Mother', 'A Confession' ପ୍ରଭୃତି ଉଚ୍ଚକୋଟୀର ଉପନ୍ୟାସ ରଚନା କରିଛନ୍ତି । ଗର୍କିଙ୍କର "ମା" ଉପନ୍ୟାସ ବହୁଭାଷାରେ ଅନୂଦିତ । Socialist Realism ବା 'ସମାଜତାନ୍ତ୍ରିକ ବାସ୍ତବତା' ତାଙ୍କ ଲେଖାର ବୈଶିଷ୍ଟ୍ୟ । ଉପେକ୍ଷିତ ନରନାରୀ ତାଙ୍କ ଉପନ୍ୟାସର ନାୟକ ଓ ନାୟିକା, ଏବଂ ସେମାନଙ୍କ ସ୍ୱାଧୀନ ଚିନ୍ତା ଓ ମୌଳିକ ଅଧିକାର ପ୍ରତି ସଚେତନ ରହି ଗର୍କି ଲେଖନୀ ଚାଳନ କରୁଥିଲେ ।

ବିଂଶ ଶତାବ୍ଦୀରେ ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ଉଚ୍ଚକୋଟୀର ଉପନ୍ୟାସ ପ୍ରକାଶ ପାଇଲା । ଏହି ସମସ୍ତ ଉପନ୍ୟାସରେ

ଲେଖକର ଚିନ୍ତାଧାରାରେ ବିଶେଷ କିଛି ପାର୍ଥକ୍ୟ ଦେଖିବାକୁ ମିଳେ ନାହିଁ । ସାହିତ୍ୟକୁ ବାସ୍ତବାଭିମୁଖୀ କରିବା ପ୍ରଚେଷ୍ଟା, ପରମ୍ପରା ପ୍ରତି ଆସ୍ଥା ଏବଂ ପାରମ୍ପରିକ ଜୀବନର ଚିତ୍ର ଉପନ୍ୟାସରେ ଦେଖାଗଲା । ପଡ଼ୋଶୀ ବଙ୍ଗଳା ଓ ତେଲୁଗୁ ଭାଷାରେ ରଚିତ ଉପନ୍ୟାସ ମଧ୍ୟ ଏହି ବୈଶିଷ୍ଟ୍ୟ ନେଇ ଆତ୍ମପ୍ରକାଶ କଲା ।

ବିଶ୍ୱକବି ରବୀନ୍ଦ୍ରନାଥ ବଙ୍କିମଚନ୍ଦ୍ରଙ୍କ ପଥ ଅନୁସରଣ କଲେ ବି ଚରିତ୍ରଗୁଡ଼ିକର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପ୍ରତି ବିଶେଷ ଦୃଷ୍ଟି ଦେଇ ଉପନ୍ୟାସ ରଚନା କଲେ । ରବୀନ୍ଦ୍ରନାଥଙ୍କ "ଗୋରା" ଏକ ମନନଧର୍ମୀ ଉପନ୍ୟାସ, ପ୍ରାଣପ୍ରାଚୁର୍ଯ୍ୟ, ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ସାର୍ବଜନୀନ ଚିନ୍ତା ତାଙ୍କ ଲେଖାର କେନ୍ଦ୍ରବିନ୍ଦୁ ।

ତେଲୁଗୁ ଔପନ୍ୟାସିକ ବିଶ୍ୱନାଥ ସତ୍ୟନାରାୟଣ ଓ ଆଦିବି ବାପିରାଜୁଙ୍କ ଉପନ୍ୟାସ ଅତି ଲୋକପ୍ରିୟ ଏବଂ ବାସ୍ତବ ଜୀବନର ଶାଶ୍ୱତ ଅନୁଭୂତି ସେଥିରେ ରୂପାୟିତ । ପାରମ୍ପରିକ ଜୀବନର ଚିତ୍ର ଆଙ୍କିବାରେ ବିଶ୍ୱନାଥ ସିଦ୍ଧହସ୍ତ; କିନ୍ତୁ ବାପିରାଜୁ ଜଣେ ବିଳାସୀ ଆଶାବାଦୀ ଓ ସୌନ୍ଦର୍ଯ୍ୟ ଉପାସକ । ସାଧାରଣତଃ, ମିଳନାନ୍ତକ ପରିଣତି ବାପିରାଜୁଙ୍କ ଉପନ୍ୟାସରେ ଦେଖିବାକୁ ମିଳେ ।

ରବୀନ୍ଦ୍ରନାଥଙ୍କ 'ଘରେ-ବାହାରେ' ଉପନ୍ୟାସ ପରେ ବଙ୍ଗଳାର ଅନ୍ୟତମ ଲବ୍ଧପ୍ରତିଷ୍ଠ ଔପନ୍ୟାସିକ ତଥା ଜନଜୀବନର ଶ୍ରେଷ୍ଠ ପ୍ରତିନିଧି ଶରତଚନ୍ଦ୍ର ନୂତନ ଚିନ୍ତା, ନୂତନ ଦୃଷ୍ଟିଭଙ୍ଗୀ ଓ ଜୀବନର ନୂତନ ରୂପ ନେଇ ରଚନା କଲେ 'ଚରିତ୍ରହୀନ', 'ଗୃହଦାହ', 'ରାଜଲକ୍ଷ୍ମୀ ଓ ଶ୍ରୀକାନ୍ତ' ପ୍ରଭୃତି ଉପନ୍ୟାସ ।

ବଙ୍କିମ ଓ ଫକୀରମୋହନ ବ୍ୟକ୍ତିର ଚରିତ୍ର ସଂସ୍କାର ପାଇଁ ପ୍ରୟାସ କରିଥିଲେ । କିନ୍ତୁ ଶରତଚନ୍ଦ୍ର ଏଥିର ପକ୍ଷପାତୀ ନୁହଁନ୍ତି ।

ତାଙ୍କ ମତରେ ମନୁଷ୍ୟ ସମାଜ ପ୍ରସୂତ । ସାମାଜିକ ସମସ୍ୟାଗୁଡ଼ିକର ସମାଧାନ ନକରି କେବଳ ନୀତିକୁ ଆଚ୍ଛାଦିତ କଲେ କିଛି ଲାଭ ନାହିଁ । ତେଣୁ ପ୍ରାଚୀନ ଯୁଗରେ ସାହିତ୍ୟିକ ଯେଉଁ ନୀତିଭ୍ରଷ୍ଟ ନରନାରୀଙ୍କୁ ଅବହେଳା କରିଥିଲେ, ସେମାନେ ହେଲେ ଶରତଚନ୍ଦ୍ରଙ୍କ ଉପନ୍ୟାସର ନାୟକ ଓ ନାୟିକା । ସାମାଜିକ ସଂସ୍କାର ନିର୍ମମ ପେଷଣ ମଣିଷର ସମସ୍ତ ଆଶା ଓ ଆକାଂକ୍ଷା ଚୂର୍ଣ୍ଣୀଭୂତ କରେ । ତେଣୁ ନାରୀ ହୁଏ ଭ୍ରଷ୍ଟା ବା ବେଶ୍ୟା; ପୁରୁଷ ହୁଏ ଚରିତ୍ରହୀନ ଓ ଲମ୍ପଟ । ଏଣୁ ଶରତଚନ୍ଦ୍ର ଏହିମାନଙ୍କୁ ଆଘାତ ନକରି ଏମାନଙ୍କ ପ୍ରତି ସମବେଦନା ପ୍ରକାଶ କରିଅଛନ୍ତି । ମାନବ ମନର ସଂଘାତ ଓ ଦ୍ୱନ୍ଦ୍ୱର ଛବି ଅତି ସୁନ୍ଦରଭାବେ ଅଙ୍କାଯାଇଛି । ସେଥିରେ ସମାଜତନ୍ତ୍ର ସହିତ ପ୍ରବୃତ୍ତିର ବିକାଶ ସୁସମନ୍ୱିତ ହୋଇ ଶରତଚନ୍ଦ୍ରଙ୍କ ଉପନ୍ୟାସକୁ ବେଶ୍ ଗତିଶୀଳ କରିଛି । ମାନବ ହୃଦୟର ପ୍ରଣୟାଭିଳାଷ ଓ ଅନ୍ୟ ଦିଗରେ ଧର୍ମ ଓ ସମାଜ ସଂସ୍କାର—ନାରୀ ହୃଦୟରେ ଏ ଦୁଇଟିର ଚିରନ୍ତନ ଦ୍ୱନ୍ଦ୍ୱ ଦେଖିବାକୁ ମିଳେ । ପ୍ରେମଲିପ୍ସା ସହିତ ସମାଜ, ସଭ୍ୟତା ଓ ଧର୍ମର ସଂଘର୍ଷ ନାରୀ ହୃଦୟରେ ଦେଖାଦେଇଛି । ନାରୀର ସମସ୍ତ କ୍ରିୟାମୂଳରେ ରହିଛି ସ୍ନେହ ଓ ପ୍ରେମ । କିନ୍ତୁ ଏହି ସହଜାତ ଆକାଂକ୍ଷାର ଧାରା ବାଧା ଦେଇଛି ଚିରାଗତ ସଂସ୍କାରର ପାଷାଣ ଉପରେ । ଏକନିଷ୍ଠ ପ୍ରେମ ଓ ସତୀତ୍ୱ ଠିକ୍ ଏକ ବସ୍ତୁ ନୁହେଁ । ରାଜଲକ୍ଷ୍ମୀ-ଶ୍ରୀକାନ୍ତ, ସାବିତ୍ରୀ ଓ ସତୀଶ ସତେ ଯେପରି ଏହାର ଗୋଟିଏ ଗୋଟିଏ ଜୀବନ୍ତ ଦୃଷ୍ଟାନ୍ତ ।

ଓଡ଼ିଆ ସାହିତ୍ୟରେ କାହ୍ନୁଚରଣ ପ୍ରଥମେ ଶରତଚନ୍ଦ୍ରଙ୍କ ଏହି ବୈପ୍ଳବିକ ଚିନ୍ତାକୁ ସ୍ଥାନ ଦେଇଛନ୍ତି ସ୍ୱରଚିତ ଉପନ୍ୟାସ 'ଭୁଣ୍ଡବାଇଦ', 'ଶାସ୍ତି' ଓ 'ଝଂଜା' ଉପନ୍ୟାସରେ । ସମାଜ କପଟ ବ୍ୟକ୍ତି ଜୀବନକୁ ପଙ୍ଗୁ କରିଦିଏ 'ଶାସ୍ତି' ତାହାର ଏକ ଜୀବନ୍ତ ଆଲେଖ୍ୟ ।

•

ଧୋବୀ ବିନ୍ଦୁ ବିଧବା । ପ୍ରାଚୀନ ସଂସ୍କୃତିର ପ୍ରତୀକ । ତେଣୁ ବିନ୍ଦୁ ବିଧବାର ସଂସ୍କାର ସଙ୍ଗେ ନାରୀ ହୃଦୟର ସହଜାତ ପ୍ରବୃତ୍ତିର ସଂଘର୍ଷ

ଦେଖିବାକୁ ମିଳେ । ଅବଶ୍ୟ ଆଜି କେତେକ ଅତ୍ୟାଧୁନିକ ଲେଖକ ଲେଖିବାରେ ଲାଗିଛନ୍ତି 'ସମାଜର ସକଳ ବିଧି, ନିଷେଧବାରା ନାରୀର ମନ ବା ଛଳ ଛଳ ପ୍ରାଣକୁ ବାଧା ଦିଆଯାଇ ପାରେନା । ତେଣୁ ବର୍ଣ୍ଣାର୍ଡ଼ଶ'ଙ୍କ ଏକ ନାଟକରେ ଜନୈକା ରମଣୀ ପ୍ରଶ୍ନ କରିଛି—

"Oh ! How silly the law is ! Why can't marry them both····· Well, I love them both."

କିନ୍ତୁ କାହ୍ନୁଚରଣ ଏଥିରେ ଏକମତ ନୁହଁନ୍ତି । ସମାଜର ପରମ୍ପରା ରକ୍ଷାକରି ସମାଜକୁ ସଜାଡ଼ିବା ସେ ଚାହାନ୍ତି । ତେଣୁ ଧୋବାର ସମାଜ ବିରୁଦ୍ଧରେ କୌଣସି ବୈପ୍ଳବିକ ଡାକ ନାହିଁ । କାରଣ ଧୋବା ନାରୀ । ନାରୀ ହିସାବରେ ତାହାର ତରୁଣୀ ସୁଲଭ ସ୍ୱପ୍ନ ଅଛି; କିନ୍ତୁ ସେହି ସ୍ୱପ୍ନ ବାସ୍ତବରେ ପରିଣତ ହୋଇପାରି ନାହିଁ । ଜୀବନର ସମସ୍ତ ବାସନାକୁ ସେ ତଳେ ତଳେ ଜାଳିପୋଡ଼ି ଦେଇଛି । ଏହି ବ୍ୟର୍ଥତା ପାଇଁ ସନେଇ ଯେତିକି ଦାୟୀ, ଅନ୍ୟ ଦିଗରେ ଧୋବା ମଧ୍ୟ ସେତିକି ଦାୟୀ । ସାଧାରଣ ନରନାରୀର ହୃଦୟରେ ଯେଉଁ କୋମଳ ପ୍ରବୃତ୍ତି, ବାସନା ଓ ଦୁର୍ବଳତା ଦେଖା ଦେଇଥାଏ, ତାହା ହିଁ ଧୋବା ନିକଟରେ ଦେଖିବାକୁ ମିଳେ । ପରିଶେଷରେ ଜୀବନର ବ୍ୟର୍ଥତା ନେଇ ସାମାଜିକ ପ୍ରଥା ବିରୁଦ୍ଧରେ, ମନସ୍ତାତ୍ତ୍ୱିକ ସଂଘର୍ଷ ବିରୁଦ୍ଧରେ ସେ ଭାଗ୍ୟ ଦେବତାଙ୍କ ନିକଟରେ ମିନତି କରି କହିଛି, "ମୋତେ ପଥର କର, ମୂକ, ଅଥବା, କଠିଣ କର ଭଗବାନ, ଠିକ୍ ତୁମରି ପରି, ଠିକ୍ ତୁମରି ପରି ।"

କାହ୍ନୁଚରଣ ସର୍ବଦା ଚାହାନ୍ତି ଏକ ଶୃଙ୍ଖଳିତ ଏବଂ ସୁଖ ସମୃଦ୍ଧିଶାଳୀ ସମାଜ । ତେଣୁ ତାଙ୍କର ଅଧିକାଂଶ ଉପନ୍ୟାସରେ ଶୋଷଣହୀନ ସମାଜ ପାଇଁ ଡାକ ଶୁଣିବାକୁ ମିଳେ; କିନ୍ତୁ ବିପ୍ଳବର ସୂଚନା ନାହିଁ । 'ଅଦେଖା ହାତ'ର ଗୀତା ଭାଗ୍ୟବାଦ ଉପରେ ବିଶେଷ ବିଶ୍ୱାସ ରଖିଛି ଏବଂ ତା ଜୀବନର ପ୍ରଧାନ ସମସ୍ୟା ହେଲା ବିବାହ, କିନ୍ତୁ ପ୍ରଣୟ ନୁହଁ । 'ଝଂଜା'ରେ ଦୁଷ୍ମନ୍ତ ଓ କ୍ଷଣପ୍ରଭା

ସମାଜରେ ଯେଉଁ ଆଦର୍ଶବାଦର ସ୍ତମ୍ଭ ପ୍ରତିଷ୍ଠା କରିବାପାଇଁ ସ୍ୱପ୍ନ ଦେଖୁଥିଲେ, ସେହି ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ସମାଜର ରୀତିନୀତି, ଶୃଙ୍ଖଳିକନ ଏଠି ବାଧା ସୃଷ୍ଟି କଲା ଯେ ଫଳରେ ସେହି ଝଞ୍ଜାପବନରେ ସେମାନଙ୍କ କଳ୍ପନା ଉଡ଼ିଗଲା ।

ଫ୍ରୟେଡ୍‌ଙ୍କ ଯୌନତତ୍ତ୍ୱ ବା ମନୋବିଜ୍ଞାନ ପ୍ରଥମେ ବଙ୍ଗଳାର 'କଲ୍ଲୋଳ' ପତ୍ରିକାରେ ଗୃହୀତ ହୋଇଥିଲା । କଲ୍ଲୋଳ-ଗୋଷ୍ଠୀ ଏହି ମତବାଦକୁ ଗ୍ରହଣ କରି ସାହିତ୍ୟ ସୃଷ୍ଟି କରିଥିଲେ ଏବଂ ଏହାର ପ୍ରଭାବ ଓଡ଼ିଆ ସାହିତ୍ୟରେ କେତେକାଂଶରେ ପଡ଼ିଥିବା ମନେହୁଏ । କାହ୍ନୁଚରଣ, ଗୋପୀନାଥ, ବିଭୂତି ପ୍ରଭୃତି ଲେଖକଙ୍କ ଉପନ୍ୟାସମାନରେ ଫ୍ରୟେଡ୍‌ଙ୍କ ଚିନ୍ତାଧାରା ସ୍ଥଳବିଶେଷରେ ପ୍ରକାଶ ପାଇଛି ।

ଔପନ୍ୟାସିକ କାଳନ୍ଦୀଚରଣ ଫକୀରମୋହନଙ୍କ ଆଦର୍ଶରେ ଅନୁପ୍ରାଣିତ । ପରମ୍ପରା ଓ ପାରମ୍ପରିକ ଜୀବନ ହିଁ ତାଙ୍କର ଆଦର୍ଶ । ସେ ଏକାନ୍ତଭାବେ ଆଦର୍ଶବାଦୀ । ସାମାଜିକ ନୀତି ଓ ଧର୍ମସଂସ୍ଥା ପ୍ରତି ତାଙ୍କର ପ୍ରଗାଢ଼ ଆସ୍ଥା । ତାଙ୍କର ଦୃଢ଼ବିଶ୍ୱାସ ମାନବ ଜୀବନ ଶୃଙ୍ଖଳାର ମଧ୍ୟରେ ସୁପରିଚାଳିତ ହେଲେ ତାର ବିକାଶ ସମ୍ଭବପର । 'ମାଟିର ମଣିଷ'ର ବରଜୁ ପ୍ରଧାନ ଏହି ଆଦର୍ଶର ପ୍ରତୀକ । ବରଜୁର ଐକାନ୍ତିକ ପ୍ରେମ, କର୍ତ୍ତବ୍ୟନିଷ୍ଠା ଓ ଆଧ୍ୟାତ୍ମିକ ଚିନ୍ତା ତା' ଜୀବନକୁ ପୂର୍ଣ୍ଣତା ଆଡକୁ ଟାଣି ନେଇଛି ।

ଅନ୍ୟତମ ଲବ୍ଧ ପ୍ରତିଷ୍ଠ ଔପନ୍ୟାସିକ ଗୋପୀନାଥ ପାଶ୍ଚାତ୍ୟ ସାହିତ୍ୟର ଭର୍ଜିନିୟା ଉଲ୍‌ଫ୍ ଓ ଜେମସ୍ ଜୟସ୍‌ଙ୍କ ପଦ୍ଧତିକୁ ଅନୁସରଣ କରୁଥିବା ବୋଧହୁଏ । ସମାଜର ବିଭିନ୍ନ ସମସ୍ୟା ଏବଂ ସାମାଜିକ ଜୀବନର ବିଭିନ୍ନ ଦିଗକୁ ସେ ପରୀକ୍ଷା କରିଅଛନ୍ତି । 'ପରଜା', 'ହରିଜନ', 'ଅମୃତର ସନ୍ତାନ', 'ମାଟିମଟାଳ' ଓ 'ଦାନାପାଣି' ପ୍ରଭୃତି ଉପନ୍ୟାସରେ ଗୋପୀନାଥ ସାମାଜିକ ଜୀବନର ବିଭିନ୍ନ ରୂପକୁ ରୂପାୟିତ କରିଛନ୍ତି । 'ପରଜା' ବ୍ୟକ୍ତିବିଶେଷ ନୁହେଁ, ଏହା ଏକ ଅନୁଷ୍ଠାନ । ତଥାକଥିତ ଆଧୁନିକ ସଭ୍ୟତାର ଆବର୍ଜନାରେ ଅକଳୁଷିତ, ସରଳ, ନିରାଡ଼ମ୍ବର, କର୍ମଠ, ନିଷ୍ପାପ ବିରାଟ ଆଦିମ ସମାଜର

ପ୍ରଣୀଙ୍କ । ପାଲସ୍ ବର୍କଙ୍କ 'Good earth' ଗ୍ରନ୍ଥରେ 'ପରଜା' ରଚିତ । ମାଟି ଥିଲା ଶୁକ୍ରୁ ଜାନିର ଏକମାତ୍ର ସମ୍ବଳ । ମାଟିକୁ କେନ୍ଦ୍ର କରି ଗଢ଼ି ଉଠିଥିଲା ତାର ସମସ୍ତ ସ୍ୱପ୍ନ । ତେଣୁ ଏକ ଦିଗରେ ଶୁକ୍ରୁ ଜାନିର ରକ୍ତାକ୍ତ ଜୀବନ ସଂଗ୍ରାମ ଏବଂ ଅନ୍ୟ ଦିଗରେ ଜିଲ୍ଲୀ ଜୀବନର ବ୍ୟର୍ଥତା ଏବଂ ଅନ୍ତର୍ଦ୍ୱାହ ଉପନ୍ୟାସଟିକୁ ଏକ ନାଟକୀୟ ପରିଣତି ଦିଗକୁ ଟାଣି ନେଇଛି । ଏହି ଉପନ୍ୟାସରେ ସେ ଦେଖାଇଛନ୍ତି ପୁରୁଷ ହୃଦୟରେ ପ୍ରଣୟାକାଂକ୍ଷା ଅତି ପ୍ରବଳଭାବେ ଦେଖା ଯାଇଥାଏ । କିନ୍ତୁ ସଭ୍ୟ ମାନବ ନାନା ନୀତି, ଆଦର୍ଶ ବା ସାମାଜିକ ସଂସ୍କାରର ତାଡ଼ନାରେ ତାକୁ ବେଳେବେଳେ ବର୍ଜନ କରିଥାଏ । ଆଦିମ ସମାଜରେ କିନ୍ତୁ ସେହିପରି ନୀତି ବା ଆଦର୍ଶର ପ୍ରଶ୍ନ ଉଠେ ନାହିଁ । ଆଦିମ ସମାଜରେ ଯୌନ ଲିପ୍‌ସା ଏକାନ୍ତ ଦୁର୍ବାର । ତେଣୁ ଜିଲ୍ଲୀର ପରିବର୍ତ୍ତନ ଯେତିକି ଆକସ୍ମିକ ସେତିକି ସ୍ୱାଭାବିକ । ଯେଉଁ ଅତ୍ୟାଚାରୀ ସାହୁକାରକୁ ସେ ଆନ୍ତରିକ ଘୃଣା କରେ ସେହି ସାହୁକାରର ବସାକୁ ରାତିଅଧରେ ଜିଲ୍ଲୀ ଗୋପନ ଅଭିସାର ରଚିଛି । ପରଜା ସମାଜରେ ନାରୀ ଏବଂ ପୁରୁଷ ଉଭୟେ ଅବସ୍ଥାର ଦାସ । ନାରୀର ସମସ୍ତ କର୍ମ ମଧ୍ୟରେ ପ୍ରଣୟାକାଂକ୍ଷା ଅତି ପ୍ରଚ୍ଛନ୍ନ । ମାନବ ଜୀବନର ଏହି ସୂକ୍ଷ୍ମ ଅନୁଭୂତିର ରହସ୍ୟକୁ ଗୋପୀନାଥ ଉଦ୍‌ଘାଟନ କରିଛନ୍ତି । ମଣିଷ ହୃଦୟରେ ପାଶବିକ ପ୍ରବୃତ୍ତି ସୁପ୍ତ ଅବସ୍ଥାରେ ଥାଏ; ଅବସ୍ଥାଚକ୍ରରେ ତାହା ଅତି ଦୁର୍ଦ୍ଦାନ୍ତ ଓ ନିଷ୍ଠୁର ହୋଇ ହଠାତ୍ ଜାଗିଉଠେ ।

ବସ୍ତୁତାନ୍ତ୍ରିକ ଆଧୁନିକ ଜୀବନ ନାନା ଅଶାନ୍ତି, ଅତୃପ୍ତି, ବିଦ୍ରୋହ ଓ ଜୀବନ ଜିଜ୍ଞାସାର ନଗ୍ନରୂପ ନେଇ ଆଜି ଦେଖାଦେଇଛି । ମନୁଷ୍ୟର ମନ ସତ୍ୟ କିନ୍ତୁ ବିଚିତ୍ର; ପ୍ରକାଶ୍ୟରେ ଏକ ରୂପ ପୁଣି ଅପ୍ରକାଶ୍ୟରେ ଅନ୍ୟ ରୂପ ଧାରଣ କରିଥାଏ । ଆଜିର ଏହି ବାସ୍ତବ, ନିର୍ମମ ଜୀବନକୁ ଭାବି ବସିଲେ ମଣିଷ ଉଦ୍‌ଭ୍ରାନ୍ତ ହୁଏ । ତେଣୁ ଆଜିର ଏ ରହସ୍ୟମୟ ଜୀବନ ନାନା କୌତୂହଳ ସୃଷ୍ଟି କରିଥାଏ । ଗୋପୀନାଥ ଜୀବନର ଏହି ବାସ୍ତବରୂପକୁ ରୂପାୟିତ କରିଛନ୍ତି 'ଦାନାପାଣି' ଓ 'ମାଟିମଟାଳ' ଉପନ୍ୟାସରେ ।

"ବଳଦତ୍ତ ଚାଲିଛି, ଚାଲିଛି ସେ । ସେ ଚାହେଁ ନାହିଁ ଧର୍ମ, ଅର୍ଥ, କାମ, ମୋକ୍ଷ । ସେ ନିର୍ବାଣ ଚାହେଁ ନାହିଁ—ସେ ଚାହେଁ ଦ୍ରୁତ ପ୍ରମୋସନ୍,

ଧନ; ପ୍ରଭୃତି । ଏହି ଉଦ୍ଦେଶ୍ୟରେ ବଞ୍ଚିବା ତାକୁ ଯେଉଁ ସାହାଯ୍ୟ କରିବ ସେହି ହେବ ତାର ସୁନ୍ଦର ଜୀବନ ।" ଏହି ଉକ୍ତିରେ ଆଧୁନିକ ଜୀବନର ଛବି ସୁସ୍ପଷ୍ଟ ।

ଯୋଗ୍ୟତମର ଉଦ୍‌ବର୍ତ୍ତନ ଯୁଗରେ ନାନା ଉପାୟ ଅବଲମ୍ବନ କରି ଜଣେ ଉପରି ଅନ୍ୟ ଜଣକୁ ପଛକୁ ଠେଲିଦେଇ ଆଗେଇ ଯିବା ପାଇଁ ଇଚ୍ଛାପ୍ରକାଶ କରିଥାଏ ତାହାର ଦୃଷ୍ଟାନ୍ତ 'ଦାନାପାଣି' ଉପନ୍ୟାସରେ ଦେଖିବାକୁ ମିଳେ । ସଚେତନ ଚିନ୍ତା ଏବଂ କର୍ମ ସହିତ ଅନ୍ତଃସ୍ଥ ଆଶା, ଆକାଂକ୍ଷା ପ୍ରଭୃତି ମିଶାଇ ମାନବ ପ୍ରକୃତିର ସମ୍ପୂର୍ଣ୍ଣ ପରିଚୟ ଦେବା ଚେଷ୍ଟା ଆଦି ଯେମିତି ଜେମସ୍ ଜୟସ୍ ଓ ଭର୍ଜିନିଆ ଉଲ୍‌ଫ କରି ପାଇଛନ୍ତି ଗୋପୀନାଥ ମଧ୍ୟ ସେଥିରେ ଚେଷ୍ଟିତ ।

ବର୍ତ୍ତମାନ ଚେତନାସ୍ରୋତମୂଳକ ଉପନ୍ୟାସ ବହୁଳଭାବେ ଇଂରେଜ ଓ ବଙ୍ଗଳା ଭାଷାରେ ଏବଂ କେତେକାଂଶରେ ଓଡ଼ିଆ ଭାଷାରେ ଦେଖିବାକୁ ମିଳେ । ଭର୍ଜିନିଆ ଉଲ୍‌ଫଙ୍କ ମତରେ '**Human character changed**'. ତେଣୁ ଆଜି ଉପନ୍ୟାସର ନୂତନ ରୂପ ଦେଖାଦେଇଛି । ତାର ଉଦ୍ଦେଶ୍ୟ, ଲକ୍ଷ୍ୟ ଓ ଗତି ସମ୍ପୂର୍ଣ୍ଣଭାବେ ବଦଳିଛି । ଏହି ଧରଣର ଉପନ୍ୟାସ ପାଠକରି ଦର୍ଶନ ଅଧ୍ୟାପକ ଉଇଲିୟମ୍ ଜେମସ୍ କହିଛନ୍ତି, "**Let us call it the stream of thought of consciousness or of subjective life.**"

ପ୍ରବହମାନ ଚେତନାସ୍ରୋତ ବା **Stream of Consciousness** — ମଣିଷର ମନ ଆଗେ ଶୁଭ୍ର ଓ ନିଷ୍କଳଙ୍କ ଥିଲା । ପ୍ରବୃତ୍ତିର ଖିଆଲରେ ସେ ଚାଳିତ ଥିଲା । କିନ୍ତୁ ପରେ ସେ ବୁଝିଲା ଦୁନିଆରେ ବଞ୍ଚିବା ପାଇଁ ହେଲେ କେତେକ ନିୟମ, ଶୃଙ୍ଖଳା ମାନି ଚଳିବା ପାଇଁ ହେବ । ତେଣୁ ଅନେକ ଚିନ୍ତା ମନର ଅନ୍ତଃସ୍ଥଳରେ ପ୍ରକାଶ ପାଇବାକୁ ଲାଗିଲା । ମଣିଷ ପ୍ରବୃତ୍ତିର ଦାସ । ପ୍ରବୃତ୍ତିକୁ ଦମନ କରିବା ପାଇଁ ଚେଷ୍ଟା କଲେ ବି କେତେବେଳେ ହୁଏତ ତାହା ଅନ୍ୟ ରୂପରେ ଆତ୍ମସମର୍ପଣ କରି ଅର୍ଦ୍ଧଚେତନ ମନରେ ଆତ୍ମପ୍ରକାଶ କରିଥାଏ ।

ଯେତେବେଳେ ଆମେ ବନ୍ଧୁଙ୍କ ସହିତ ସାଂସାରିକ ବିଷୟରେ ସୁଖାଳାପ କରି ବସୁ ସେତିକବେଳେ ହୁଏତ ପାଞ୍ଚବର୍ଷ ବା ଦଶବର୍ଷ ତଳେ ଘଟିଥିବା ରୋମାଞ୍ଚକର ଘଟଣାର ଚିନ୍ତା କରିଥାଉ । ସକାଳର ଚା' କପେ ପରେ ଯେତେବେଳେ ସଜ ଖବର ଜାଣିବା ପାଇଁ ଖବରକାଗଜ ନେଇ ପଢୁଠିକ୍ ସେତିକବେଳେ ଆମ ମନରେ ନାନା ଚିନ୍ତା ଦେଖାଦେଇଥାଏ । ଏମିତି ଚେତନାସ୍ରୋତ ପ୍ରବହମାନ ଅବସ୍ଥାରେ ମଣିଷର ବିଚିତ୍ର ମନ ଭିତରେ ସର୍ବଦା ଲାଗି ରହିଥାଏ । ମଣିଷ ମନର ଗୋପନ କୋଣରେ ଅବ୍ୟବସ୍ଥିତ ଚିନ୍ତାସ୍ରୋତ ସର୍ବଦା ପ୍ରବାହିତ । ତାହାକୁ ଆଲୋକ ଆଡ଼କୁ ଟାଣି ଆଣି ରୂପ ଦେବାର ଚେଷ୍ଟା ଆଜି ଚାଲିଛି । ସଚେତନ ଚିନ୍ତା ସହିତ ଅବଚେତନ ମନର ଆଶା, ଆକାଂକ୍ଷା, ଆକସ୍ମିକ ଭାବ ପ୍ରଭୃତି ମିଶାଇ ମଣିଷ ପ୍ରକୃତିର ସମ୍ପୂର୍ଣ୍ଣ ପରିଚୟ ଉପନ୍ୟାସରେ ଦିଆଯାଉଛି । ଏହି ଧରଣର ଉପନ୍ୟାସ କେତୋଟି ଘଣ୍ଟା ବା ଦିନର ଚିନ୍ତାଧାରାକୁ କେନ୍ଦ୍ର କରି ଗଢ଼ି ଉଠିଥାଏ । ଇଂରେଜ ଓ ବଙ୍ଗଳା ସାହିତ୍ୟରେ ଏହି ଧରଣର ଚେତନାସ୍ରୋତ-ମୂଳକ ଉପନ୍ୟାସ ବହୁ ଆଗରୁ ଦେଖା ଦେଇଥିଲେ ବି ଓଡ଼ିଆ ସାହିତ୍ୟରେ ଏହା ନୂତନ; ବର୍ତ୍ତମାନ ପରୀକ୍ଷା ଚାଲିଥିବା ମନେହୁଏ । କାହ୍ନୁଚରଣଙ୍କ 'ଢେଉଢ଼େଉକା', 'ବଗବଗୁଲି', ଗୋପୀନାଥଙ୍କ 'ଦାନାପାଣି' ଓ ଉଦୀୟମାନ ଲେଖକ ସୂର୍ଯ୍ୟନାରାୟଣ ଦାଶଙ୍କ 'ମାନସ ମନ୍ଥନ' ଉପନ୍ୟାସରେ ପ୍ରବହମାନ ଚେତନାସ୍ରୋତର ଧାରା କେତେକାଂଶରେ ଦେଖିବାକୁ ମିଳେ । ଅତ୍ୟାଧୁନିକ ଓଡ଼ିଆ ଉପନ୍ୟାସ ଭିତରେ ବାରିଷ୍ଟର ଗୋବିନ୍ଦ ଦାଶଙ୍କ ନୂତନ ଉପନ୍ୟାସ 'ଅମାବାସ୍ୟାର ଚନ୍ଦ୍ର' ପ୍ରଣିଧାନଯୋଗ୍ୟ । ଏଥିରେ ଲେଖକ ପୁଣି ଏକ ନୂତନ ଚିନ୍ତା ସମାଜକୁ ଯୋଗାଇଛନ୍ତି । ତାଙ୍କର 'କାଉଲ' ଚରିତ୍ର ଏକ ଅଭିନବ ତଥା ଅପୂର୍ବ ସୃଷ୍ଟି । ଲେଖକଙ୍କ ଭାଷାରେ "ଯିଏ ପାପ ପୁଣ୍ୟକୁ ସମାଜର ତତ୍କାଳୀନ ମୂଲ୍ୟବୋଧରେ ବିଚାର ନକରି, ମନୁଷ୍ୟତାର ନିକଟରେ ତଉଲି ପାରିଛି, ସେହିପରି ମହାନ୍ ବ୍ୟକ୍ତିଙ୍କ ହାତରେ ମୋର ଏ କାଉଲ୍‌କୁ ସମର୍ପି ଦେଉଛି ।"

× × × ×

'ଆମ କାଉଲ୍ ମଦ୍ୟପ, ଲମ୍ପଟ, ଭ୍ରଷ୍ଟ, ଚରିତ୍ରହୀନ ସତ; କିନ୍ତୁ ତାଙ୍କର ମହାନ୍ ମନୁଷ୍ୟତା ପାଖରେ ଏସବୁ କଳଙ୍କ ନିଷ୍ପ୍ରଭ, ଗୌଣ

ହୋଇଉଠିଛି ।' ମାନବିକତାହିଁ ସବୁଠୁ ବଡ଼ କଥା—ଏହି ବଳିଷ୍ଠ ଚିନ୍ତାଧାରା ପ୍ରକାଶ ପାଇଛି 'ଅମାବାସ୍ୟାର ଚନ୍ଦ୍ର' ଉପନ୍ୟାସରେ ।

ମୋଟ ଉପରେ ଦେଖିବାକୁ ଗଲେ ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତାଧାରା ଉପନ୍ୟାସରେ ସବୁଦିନ ପାଇଁ ପ୍ରକାଶ ପାଇ ନଥାଏ ଏବଂ ସମସାମୟିକ ଲେଖକର ଚିନ୍ତାଧାରାରେ ବି ମୌଳିକ ପାର୍ଥକ୍ୟ ଦେଖିବାକୁ ମିଳିଥାଏ । ସାମାଜିକ, ରାଜନୈତିକ, ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନରେ ଲେଖକର ଚିନ୍ତାଧାରା ପରିବର୍ତ୍ତିତ ହୋଇଥାଏ । ରାଜତନ୍ତ୍ର-ଶାସନର ବିଲୋପ ସାଧନ, ଗଣତନ୍ତ୍ରର ଅଭ୍ୟୁଦୟ, ଯନ୍ତ୍ର ସଭ୍ୟତା, ବୁଦ୍ଧିବାଦୀ ଦର୍ଶନ, ବ୍ୟକ୍ତି-ସ୍ୱାତନ୍ତ୍ର୍ୟ, ଦ୍ୱିତୀୟ ମହାଯୁଦ୍ଧର ବିଷକ୍ରିୟା ପ୍ରଭୃତି ଉପରେ ଭିତ୍ତିକରି ଉପନ୍ୟାସ ଲେଖାଯାଉଛି । କିନ୍ତୁ ଆଜି ସମାଜରେ ଗୋଟିଏ ଦିଗରେ ନୈତିକ ମୂଲ୍ୟବୋଧ ହ୍ରାସ, ଭକ୍ତି ଅବିଶ୍ୱାସ ଦେଖାଦେଇଛି, ଅନ୍ୟ ଦିଗରେ ସାମ୍ୟବାଦୀ ଯନ୍ତ୍ରଶିଳ୍ପ ସମୃଦ୍ଧ ସମାଜ ସମ୍ପର୍କରେ ଆତଙ୍କ ପ୍ରକାଶ ପାଇଛି । ତେଣୁ ଆଧ୍ୟାତ୍ମିକ ଚେତନା ଭିତରେ ମୁକ୍ତି ଖୋଜିବା ପ୍ରଚେଷ୍ଟା ଆଜି କେତେକ ଆଧୁନିକ ଉପନ୍ୟାସରେ ଦେଖିବାକୁ ମିଳେ । ଫ୍ରୟଡ୍‌ଙ୍କ 'ଯୌନତତ୍ତ୍ୱ' ପ୍ରତି ଆଜି ଆଉ ବିଶେଷ ଗୁରୁତ୍ୱ ଦିଆଯାଉ ନାହିଁ, କେବଳ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଉପରେ ନଜର ପଡ଼ୁଛି । ଜୀବନକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବା ଚେଷ୍ଟା ବର୍ତ୍ତମାନ ଚାଲିଛି । ତେଣୁ ସମାଲୋଚକଙ୍କ ମତରେ ଆଜିର ଆଦର୍ଶ ପ୍ରଥମେ ମଣିଷ, ତା ପରେ ପ୍ରେମ, ତା ପରେ ଆର୍ଟ । ଏହିଭଳି ନୂତନ ଚିନ୍ତାର ସ୍ରୋତ ଗଡ଼ି ଚାଲିଛି ଅତ୍ୟାଧୁନିକ ଉପନ୍ୟାସରେ ।



# ଆଧୁନିକ ପଦ୍ୟ ସାହିତ୍ୟର ଅଭ୍ୟୁଦୟ

ଆଧୁନିକ ଓଡ଼ିଆ ପଦ୍ୟ ସମ୍ବନ୍ଧରେ ପଦେ କହିବାକୁ ଗଲାବେଳେ ପ୍ରଥମେ ଆଧୁନିକ ସାହିତ୍ୟର ଜନ୍ମକାଳ ପ୍ରତି ଦୃଷ୍ଟି ଦେବା ଉଚିତ । ରୀତିଯୁଗ ପରେ ଏବଂ ଆଧୁନିକ ଯୁଗ ବା ରାଧାନାଥ ଯୁଗ ଆରମ୍ଭ ପୂର୍ବରୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ଅବସ୍ଥା ଦେଖା ଦେଇଥିଲା ସମାଲୋଚକ-ମାନେ ତାହାକୁ 'ଅନ୍ଧକାର ଯୁଗ' ବୋଲି କହନ୍ତି । କାରଣ ସେତେବେଳେ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ଘୋର ବିଶୃଙ୍ଖଳା ଦେଖାଦେଇ ଦେଶର ସାଂସ୍କୃତିକ ବାତାବରଣକୁ ଦୂଷିତ କରିଥିଲା । ତେଣୁ ଓଡ଼ିଆ ସାହିତ୍ୟର ଏହା ଏକ ସନ୍ଧିବେଳ ( **Transitional period** ) କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଇଂରେଜମାନେ ୧୮୦୩ ସାଲରେ ଓଡ଼ିଶାକୁ ନିଜ ଶାସନାଧୀନକୁ ଆଣିଲେ । ସେମାନଙ୍କ ଜମିଜମା ବନ୍ଦୋବସ୍ତ ଓ ଶାସନପ୍ରଣାଳୀ ଦେଶରେ ଅନ୍ୟ ଏକ ଶୋଷକ ଶ୍ରେଣୀ ସୃଷ୍ଟି କଲା । ଫଳରେ ଅଶାନ୍ତି ଓ ଅସନ୍ତୋଷ ବୃଦ୍ଧି ପାଇଲା ଏବଂ ତାହାର ଉଗ୍ର ସ୍ୱରୂପ ଦେଖାଦେଲା ୧୮୧୭ ସାଲର ଐତିହାସିକ ପାଇକ ବିଦ୍ରୋହ । ରାଜନୈତିକ ଜୀବନରେ ଯେପରି ବିପର୍ଯ୍ୟୟ ଅର୍ଥନୈତିକ ତଥା ସାମାଜିକ ଜୀବନରେ ବି ଅବିକଳ ସେହିପରି ବିପର୍ଯ୍ୟୟ ଦେଖା ଦେଇଥିଲା । ୧୮୬୬ ସାଲରେ ନ'ଅଙ୍କ ଦୁର୍ଭିକ୍ଷ, ପ୍ରଳୟଙ୍କରୀ ବନ୍ୟା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେଇ ଅର୍ଥନୈତିକ ଜୀବନକୁ ଚୂରମାର କରି ଦେଇଥିଲା । ୧୮୬୮ ସାଲରେ ଓଡ଼ିଆ ଭାଷା ଲୋପ କରିବା ପାଇଁ ଅବାଞ୍ଛନୀୟ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । କିନ୍ତୁ ସୁଖର କଥା ତତ୍କାଳୀନ ରେଭିନ୍ୟୁ କମିଶନର ରେଭେନ୍ସା ସାହେବ, ତତ୍କାଳୀନ କଲେକ୍ଟର ଜନ୍ ବାମସ୍ ଓ ମିଶନାରୀ ଉଇଲିୟମ୍ ମିଲ୍ଟନ୍‌ଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଉଦ୍ୟମ ଫଳରେ ସେହି ଆନ୍ଦୋଳନର ମୂଳୋତ୍ପାଟନ କରିଥିଲେ । ଓଡ଼ିଆ ଭାଷା

ଶିକ୍ଷାନୁଷ୍ଠାନ ଓ କଚେରୀରେ ପ୍ରଚଳନ ହେବାପାଇଁ ସରକାରୀ ଆଦେଶ ଘୋଷଣା କରାଗଲା । ୧୮୦୦ ସାଲରେ ପଶ୍ଚିମ ବଙ୍ଗଳାର କଲିକତା ଫୋର୍ଟ ଉଇଲିୟମ୍ କଲେଜ ସ୍ଥାପିତ ହେଲା । ଫଳରେ ବଙ୍ଗଳା ଓ ଓଡ଼ିଶାରେ ଆଧୁନିକ ସାହିତ୍ୟର ବିକାଶ ଘଟିଥିଲା ।

ଫୋର୍ଟ ଉଇଲିୟମ୍ କଲେଜ ପ୍ରତିଷ୍ଠିତ ହେବା ପରେ ଆଞ୍ଚଳିକ ଭାଷା ଓ ସାହିତ୍ୟର ବିକାଶ ପାଇଁ ଯଥେଷ୍ଟ ଧ୍ୟାନ ଦିଆଗଲା । ଲର୍ଡ଼ Wallesly ତାଙ୍କ ବିବରଣୀ ( Minutes )ରେ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି, "Fort William College become a centre of Oriental learning and Culture and gave a great stimulous to language and literature."

( Minutes of Wallesly )

ଶ୍ରୀରାମପୁର ମିଶନାରୀ ପରିଚାଳକ ଓ ଭ୍ରାତୃବର୍ଗ ଅତି ଉତ୍ତମରୂପେ ସଂସ୍କୃତ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷା ଶିକ୍ଷା କରିଥିଲେ । ଶ୍ରୀରାମପୁରର ପ୍ରାଣପୁରୁଷ ଉଇଲିୟମ୍ କେରୀ ଘନିଷ୍ଠଭାବେ ବଙ୍ଗଳା ଓ ଓଡ଼ିଶାର ନବଜାଗୃତି ସହିତ ଯୋଗାଯୋଗ ରକ୍ଷା କରିଥିଲେ । ମୁଦ୍ରାଯନ୍ତ୍ର (Printing Press) ସ୍ଥାପନ ଓ ଦେଶୀୟ ଭାଷାରେ ବାଇବେଲ ମୁଦ୍ରିତ କରି ସାମ୍ପ୍ରତିକ ସାହିତ୍ୟରେ ଅଭିନବ ଶୈଳୀ ସୃଷ୍ଟି କରିଥିଲେ । ଧର୍ମଚେତନା ଓ ଉଗ୍ର ପ୍ରଚାରଧର୍ମିତା ସତ୍ତ୍ୱେ ମିଶନାରୀମାନେ ବଙ୍ଗଳା, ଓଡ଼ିଆ ପ୍ରଭୃତି ଆଞ୍ଚଳିକ ଭାଷାରେ ନୂତନ ଶୈଳୀର ଗଦ୍ୟ, ପଦ୍ୟ ରଚନା କରିବା ସଙ୍ଗେ ସଙ୍ଗେ ପତ୍ରପତ୍ରିକା ( Periodicals ) ପ୍ରକାଶ କରିଥିଲେ ।

୧୮୨୨ ସାଲରେ ଓଡ଼ିଶାକୁ ମିଶନାରୀମାନଙ୍କ ଆଗମନ, ୧୮୩୮ ସାଲରେ ପ୍ରଥମଥର ପାଇଁ କଟକଠାରେ ମୁଦ୍ରାଯନ୍ତ୍ର ସ୍ଥାପନ ( Mission Press ) ଓ ପରେ ପରେ ପତ୍ରପତ୍ରିକା ପ୍ରକାଶ କରି ଆଧୁନିକ ଢଙ୍ଗରେ ସରଳ ଭାଷାରେ ଗଦ୍ୟ, ପଦ୍ୟ ଲେଖିବା ଆରମ୍ଭ କରିଥିଲେ । ବିଭିନ୍ନ ସ୍ଥାନରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରି ମିଶନାରୀମାନେ ଆଧୁନିକ ଶିକ୍ଷାର ପ୍ରସାର ପାଇଁ ମନୋନିବେଶ କରିଥିଲେ । ୧୮୭୦ ପରେ ଓଡ଼ିଆ ଜନ-ଜୀବନରେ ନବ ଜାଗରଣ ଦେଖା ଦେଇଥିଲା । ଫଳରେ 'ଉତ୍କଳ

ଦୀପିକା', 'ଉତ୍କଳ ହିତୈଷିଣୀ', 'ଉତ୍କଳ ପ୍ରଭା', 'ସମ୍ବାଦବାହିକା' ପ୍ରଭୃତି ମାସିକ ଏବଂ ପାକ୍ଷିକ ପତ୍ରିକା ପ୍ରକାଶିତ ହୋଇ ନୂତନ ଚିନ୍ତା ପରିବେଷଣ କଲା । ସେ କାଳର 'ଉତ୍କଳ ଦର୍ପଣ' କହେ '୧୮୭୩ ସାଲ' ଓଡ଼ିଶାରେ ନୂତନ ଜୀବନ ସ୍ରୋତର ସଙ୍କେତ ଦିଏ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରେ ପ୍ରଭାବିତ ହୋଇ ଯେଉଁମାନେ ନୂତନ ରୀତିରେ ଲେଖିବା ଆରମ୍ଭ କଲେ ସେମାନଙ୍କ ମଧ୍ୟରେ ସୁଷମା ଗ୍ରାହକ କବି ରାଧାନାଥ ହିଁ ଯଥାର୍ଥରେ ଯୁଗସ୍ରଷ୍ଟା ଓ ଯୁଗ ପ୍ରବର୍ତ୍ତକ । ସେ ପ୍ରଥମେ ସଂସ୍କୃତ କାବ୍ୟକବିତା ଓଡ଼ିଆରେ ସୁନ୍ଦର ଭାବେ ଅନୁବାଦ କରୁଥିଲେ ଏବଂ ବଙ୍ଗଳା ଭାଷାରେ ଗୀତିକବିତା ଲେଖିବା ଆରମ୍ଭ କରିଥିଲେ । କିନ୍ତୁ ଯେଉଁଦିନ ସେ ତତ୍କାଳୀନ ସ୍କୁଲ ଇନସ୍ପେକ୍ଟର ଶ୍ରୀଯୁକ୍ତ ଭୂଦେବ ମୁଖାର୍ଜୀଙ୍କ ସମ୍ପର୍କରେ ଆସିଲେ ଏବଂ ଭୂଦେବ ବାବୁଙ୍କୁ କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ଓ 'ବୈଦେହୀଶ ବିଳାସ'ର କେତୋଟି ଛାନ୍ଦ ପଢ଼ି ଶୁଣାଇଲେ, ଭୂଦେବ ବାବୁ ସେଥିରେ ମୁଗ୍ଧ ହେଲେ । ରାଧାନାଥଙ୍କ ଗୁଣରେ ମୁଗ୍ଧ ହୋଇ ଏବଂ ପ୍ରାଚୀନ ଓଡ଼ିଆ କାବ୍ୟର ପ୍ରଶଂସା କରି ସେ ରାଧାନାଥଙ୍କୁ ଉପଦେଶ ଛଳରେ କହିଲେ, "ମୁଁ ଆଶା କରୁଛି, ତୁମେ ନୂଆ ଗଡ଼ିବାକୁ ଚେଷ୍ଟା କରିବ । ଓଡ଼ିଶା ଅତି ସୁନ୍ଦର ଦେଶ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ (Meet nurse for a poetic child) । ଓଡ଼ିଶାର ଯେଉଁ ଆଡକୁ ଚାହିଁବ ନୂଆ ଗଡ଼ିବାର ଉପାଦାନ ଯଥେଷ୍ଟ ରହିଛି ।" ( ରାଧାନାଥ ଜୀବନୀ ) ।

ଭୂଦେବ ବାବୁଙ୍କ ଏହି ପଦେ କଥା ରାଧାନାଥଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇ ଥିଲା । ତା ଛଡ଼ା ସେ ଜଣେ ଜାତୀୟତାବାଦୀ । ତେଣୁ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ରାଧାନାଥ ଜଣେ ଶ୍ରେଷ୍ଠ କଳାକାର । ଓଡ଼ିଆ ଭାଷାରେ ସେ ଯେଉଁ ମହାକାବ୍ୟ, କାବ୍ୟ ଓ ଖଣ୍ଡକାବ୍ୟ ସୃଷ୍ଟି କରିଛନ୍ତି ତାହା ଯେତିକି ରସବନ୍ତ ସେତିକି ଭାବଗର୍ଭକ ଓ ପ୍ରାଣବନ୍ତ । ସରଳ, ତରଳ, କାନ୍ତକୋମଳ ପଦାବଳୀ, ଅଭିନବ ଶୈଳୀ, ରସାନୁଭୂତି, ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପାଇଁ ରାଧାନାଥୀ ସାହିତ୍ୟର ଯଥେଷ୍ଟ ଗୌରବ ରହିଛି ।

୧୮୬୧ ଠାରୁ ୧୮୯୫ ସାଲ ଯାଏଁ ଆଧୁନିକ ସାହିତ୍ୟର ଅଭ୍ୟୁଦୟ କାଳ । ଏହି ସମୟରେ ରାଧାନାଥଙ୍କ ସହିତ ମଧୁସୂଦନ, ଫକୀରମୋହନ, ରାମଶଙ୍କର, ଉମେଶଚନ୍ଦ୍ର, ଗଙ୍ଗାଧର ପ୍ରଭୃତି କାବ୍ୟ, ଗୀତିକବିତା, ନାଟକ, ଉପନ୍ୟାସ ଲେଖି ଓଡ଼ିଆ ସାହିତ୍ୟରେ ଏକ ଅଭିନବ ସୃଷ୍ଟି ଆରମ୍ଭ କଲେ । ଏହି ଅଭିନବ ସୃଷ୍ଟି ଜୀବନ-ଧାରାରେ ଏକ ନୂତନ ଆଭିମୁଖ୍ୟ ନେଇ ଆତ୍ମପ୍ରକାଶ କରିଥିଲା ।

ଆଧୁନିକ ପଦ୍ୟ ସାହିତ୍ୟର ଆଦ୍ୟ ପ୍ରତିନିଧି ହିସାବରେ ରାଧାନାଥ ଯେଉଁ ରସାଳ କାବ୍ୟକବିତା ସୃଷ୍ଟି କରିଅଛନ୍ତି ସେଥିରେ ନୂତନତା ବହୁ ପରିମାଣରେ ପରିଲକ୍ଷିତ ହୁଏ । ଯଥା—

(କ) **ବଳିଷ୍ଠ ଜାତୀୟତା**—ରାଧାନାଥ ତାଙ୍କ କାବ୍ୟକବିତାରେ ନିଜ ଜନ୍ମମାଟିର ପ୍ରାକୃତିକ ବିଭବ, ଐତିହାସିକ ଘଟଣାବଳୀ, ଭୌଗୋଳିକ ଚିତ୍ର, ରାଜନୈତିକ ଓ ସାମାଜିକ ଅବସ୍ଥାର ବାସ୍ତବ ଚିତ୍ରକୁ ଅତି ସୁନ୍ଦରଭାବେ ରୂପାୟିତ କରିଛନ୍ତି । ଉତ୍କଳୀୟ ମୌନ ପ୍ରକୃତି ପ୍ରଥମଥର ପାଇଁ ଜୀବନ୍ତଭାବେ ଦେଖାଦେଇଛି ତାଙ୍କର 'ଚିଲିକା'ରେ । ଉତ୍କଳୀୟ ପ୍ରକୃତି ଅବହେଳିତ ହୋଇ ଅନ୍ଧକାର ଭିତରେ ପଡ଼ିଥିବାରୁ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ତାକୁ ଆଲୋକକୁ ଟାଣି ଆଣିବା ପାଇଁ କରୁଣ କଣ୍ଠରେ ବୀଣାପାଣିଙ୍କୁ ନିବେଦନ ଜଣାଇ କହିଛନ୍ତି—

"ଦେବୀ ବୀଣାପାଣି ! କେଉଁ ପାପ ଫଳେ ?
କରୁଣା ତୋହର ଊଣା ଏ ଉତ୍କଳେ,
କ୍ଷୁଦ୍ର-ଶିପ୍ରା-ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲ ଗୁପତେ ।"

'ମହାଯାତ୍ରା' ଓ 'ଦରବାର' ତତ୍କାଳୀନ ରାଜନୈତିକ ଓ ସାମାଜିକ ପୃଷ୍ଠଭୂମି ଉପରେ ଲିଖିତ । ସେଥିରେ ରାଧାନାଥଙ୍କ ଉଗ୍ର ଜାତୀୟତା ପ୍ରକାଶ ପାଇଛି । ତାଙ୍କ ମୁଖ ନିଃସୃତ ଅମୃତବାଣୀ 'ସର୍ବେଷାଂନୋ ଜନନୀ ଭାରତ' ଜାତୀୟ ଜୀବନରେ ସତେ ଯେପରି ଏକ ମହାମନ୍ତ୍ର । ଜାତିକୁ ଉଦ୍‌ବୋଧନ ଦେବାପାଇଁ ସେ ଏହିଭଳି ଜାତୀୟ ସଙ୍ଗୀତ ରଚନା କରିଥିଲେ ।

(ଖ) **ପ୍ରକୃତି ବର୍ଣ୍ଣନା**—ରାଧାନାଥ ପ୍ରକୃତିପ୍ରେମୀ । ସୃଷ୍ଟିର ରୂପ-ରସ ଓ ଗନ୍ଧରେ ସେ ମୁଗ୍ଧ । ଓଡ଼ିଶାର ନଦ, ନଦୀ, ବନ ଓ ପ୍ରାନ୍ତର, ବୃକ୍ଷ, ଲତା, ଫଳ ଓ ପୁଷ୍ପର ଜୀବନ୍ତ ବର୍ଣ୍ଣନା ତାଙ୍କ କାବ୍ୟଗୁଡ଼ିକରେ ଦେଖିବାକୁ ମିଳେ । ସେ ଯଥାର୍ଥରେ ଜଣେ Sensuous Poet. ପ୍ରକୃତିର ରୂପକୁ ଇନ୍ଦ୍ରିୟଦ୍ୱାରା ଅନୁଭବ କରିଅଛନ୍ତି ।

(ଗ) **ବିଦେଶୀ କଥାବସ୍ତୁର ଆହରଣ ଓ ଦେଶୀ ବିଦେଶୀ ଉପାଦାନର ସାର୍ଥକ ସମୀକରଣ**—ପୁରାତନକୁ ନୂତନ କରି ଗଢ଼ିବା ପ୍ରବୃତ୍ତି ରାଧାନାଥଙ୍କ ମନରେ ପ୍ରଥମେ ଜନ୍ମିଥିଲା । ତେଣୁ ସେ ପାଶ୍ଚାତ୍ୟ ସାହିତ୍ୟରୁ ବହୁ ପ୍ରାଚୀନ ଉପାଦାନ ଆହରଣ କରି ନିଜର ମୌଳିକ ପ୍ରତିଭାବଳରେ ସେହି ବିଷୟବସ୍ତୁକୁ ନୂତନରୂପେ ନିଜ ସାହିତ୍ୟରେ ସ୍ଥାନ ଦେଇଛନ୍ତି । ଓଡ଼ିଶା ମାଟିରେ ଯେଉଁ ବିଷୟବସ୍ତୁ ସହଜରେ ମିଶିଯିବ ସେହିପରି ବିଷୟବସ୍ତୁ ସେ ବିଦେଶୀ ସାହିତ୍ୟରୁ ଆହରଣ କରିଛନ୍ତି । ତେଣୁ ଆହରଣରେ ତାଙ୍କର କିଛି କୃତିତ୍ୱ ନାହିଁ ବରଂ କୃତିତ୍ୱ ରହିଛି ତାହାର ଯଥାର୍ଥ ବିନିଯୋଗରେ । 'କେଦାରଗୌରୀ', 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', 'ଉଷା' ଓ 'ପାର୍ବତୀ' କାବ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ସାମ୍ୟ ପରିଲକ୍ଷିତ ହୁଏ ଏବଂ ବିଦେଶୀ ସାହିତ୍ୟରୁ ଆହରଣ ଓ ତାହାର ବିନିଯୋଗରେ ରାଧାନାଥଙ୍କ କବିପ୍ରତିଭା କିପରି ସୁନ୍ଦରଭାବେ ଫୁଟି ଉଠିଛି ତାହାର ସୂଚନା ମିଳେ । ସେକସ୍‌ପିୟରଙ୍କ 'ପିରାମସ୍-ଥିସ୍‌ବି', ଗ୍ରୀକ୍ କବି ଓଭିଡ଼ଙ୍କର 'ମେଟାମରଫସିସ୍', ହୋମରଙ୍କ 'ଇଲିୟଡ଼୍', ସ୍କଟଙ୍କ 'ଲେଡ଼ି ଅଫ୍ ଦ ଲେକ୍' ଓ ଓଭିଡ଼ଙ୍କ 'ଆଟଲାଣ୍ଟାରେଣ୍ଟ'ରୁ ବହୁ ଉପାଦାନ ସଂଗ୍ରହ କରି ରାଧାନାଥ ବିଭିନ୍ନ କାଳ୍ପନିକ କାବ୍ୟ ସୃଷ୍ଟି କରିଛନ୍ତି । ଏହି ସମସ୍ତ କାବ୍ୟରେ କବିଙ୍କର ମୌଳିକ ଚିନ୍ତାଧାରା ଏବଂ ସୁନିପୁଣ କବିପ୍ରତିଭା ସୁସ୍ପଷ୍ଟ । ସମାଲୋଚକଙ୍କ ମତରେ ରାଧାନାଥ "ସମନ୍ୱୟଧର୍ମୀ ସାହିତ୍ୟର ଆଦ୍ୟ ପ୍ରତିନିଧି ।"

(ଘ) **ବ୍ୟଙ୍ଗାତ୍ମକ କାବ୍ୟର ସୃଷ୍ଟି**—ପ୍ରାଚୀନକାଳରୁ କାବ୍ୟ କବିତାରେ ହାସ୍ୟରସର ଅବତାରଣା ଦେଖିବାକୁ ମିଳେ । କିନ୍ତୁ ଉଚ୍ଚକୋଟୀର ବ୍ୟଙ୍ଗାତ୍ମକ ରଚନା ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ

ବିରଳ କହିଲେ ଚଳେ । ଇଂରେଜ ସାହିତ୍ୟ ପ୍ରଭାବରେ ରାଧାନାଥଙ୍କ ଯୁଗରେ ବ୍ୟଙ୍ଗାତ୍ମକ ରଚନା 'Satire'ର ସମସ୍ତ ଲକ୍ଷଣ ବହନ କରି ଆତ୍ମପ୍ରକାଶ କଲା । ଇଂରେଜ ସାହିତ୍ୟିକ Dryden, Pope ଓ Swift ଯେଉଁଭଳି ବ୍ୟଙ୍ଗାତ୍ମକ ରଚନା ସୃଷ୍ଟି କରି ତତ୍କାଳୀନ ରାଜନୈତିକ ଓ ସାମାଜିକ ଅବସ୍ଥାର କଟୁ ସମାଲୋଚନା କରିଅଛନ୍ତି ରାଧାନାଥ ଯୁଗର କବିମାନେ ଅବିକଳ ସେହିଭଳି ବ୍ୟଙ୍ଗାତ୍ମକ ରଚନା ସୃଷ୍ଟି କରିଅଛନ୍ତି । ରାଧାନାଥ ବିଶେଷଭାବେ Dryden ଓ Swift ଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ମନେହୁଏ । 'Swift'ଙ୍କର 'Satire' ସମ୍ପର୍କରେ ଜଣେ ବିଶିଷ୍ଟ ପାଶ୍ଚାତ୍ୟ ସମାଲୋଚକ କହିଛନ୍ତି "Swift's satires appeal entirely to the intellect' ( Gulliver's Travels ). Dryden ମଧ୍ୟ କୌଣସି ବ୍ୟକ୍ତିବିଶେଷ ପ୍ରତି ଆକ୍ଷେପ ନକରି ସମାଜର ଦୋଷ ତ୍ରୁଟି ଦେଖି ସାମାଜିକ ଅବସ୍ଥାର ସମାଲୋଚନା କରୁଥିଲେ । ରାଧାନାଥଙ୍କ 'ଦରବାର' ଅବଶ୍ୟ ନିଜ ଭଉଣୀ ଗୋବିନ୍ଦ ବିଦ୍ୟାଧରଙ୍କ ପରିହାସ ଛଳରେ ଲେଖା ଯାଇଥିଲା । କିନ୍ତୁ ସେ ତତ୍କାଳୀନ ସାମାଜିକ ପରିସ୍ଥିତି ପ୍ରତି ଦୃଷ୍ଟିଦେଇ 'ନବ୍ୟ ଉତ୍କଳର ଭବ୍ୟ ସମାଜ'ରେ ଦେଖାଦେଇଥିବା ଚାଲିଚଳନ, ରୀତିନୀତିରେ କ୍ଷୁବ୍ଧ ହୋଇ ସେହିମାନଙ୍କୁ 'ଦରବାର' କାବ୍ୟରେ ସମାଲୋଚନା କରିଯାଇଥିବା ମନେ ହୁଏ ।

"ହାସ୍ୟରସ କିମ୍ବା ବ୍ୟଙ୍ଗବିଦ୍ରୂପ ଓଡ଼ିଆ ସାହିତ୍ୟରେ ନୂତନ ନୁହେଁ; କିନ୍ତୁ ବ୍ୟକ୍ତିଗତ କିମ୍ବା ସାମାଜିକ ପୃଷ୍ଠଭୂମି ଉପରେ ସମାଲୋଚନା ଲକ୍ଷ୍ୟରେ ବ୍ୟଙ୍ଗବିଦ୍ରୂପ ପରିବେଷଣ କରିବା ଏ ସାହିତ୍ୟରେ ଏହାହିଁ ହେଉଛି ଏକ ସାର୍ଥକ ପ୍ରାଥମିକ ଉଦ୍ୟମ । ବିଦେଶୀ ସାହିତ୍ୟର ଆଦର୍ଶରେ ରାଧାନାଥ ଏ ଆଙ୍ଗିକ ଓଡ଼ିଆ ସାହିତ୍ୟକୁ ଆଣି ଭବିଷ୍ୟତ୍ ଲେଖକମାନଙ୍କ ପାଇଁ ମାର୍ଗ ଉନ୍ମୁକ୍ତ କରି ଦେଇଥିଲେ ।"

[ ଡ: ନଟବର ସାମନ୍ତରାୟଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପୃ ୩୦୨ ]

ବାସ୍ତବିକ ଦେଖିବାକୁ ଗଲେ ଡ: ସାମନ୍ତରାୟଙ୍କ ଏ ମନ୍ତବ୍ୟ ଯଥାର୍ଥ । ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ', 'ମୁଁ ହାଠ ଦାଣ୍ଡୁଆ' ମଧୁସୂଦନଙ୍କ 'ସାବାସ୍ ସାହିତ୍ୟ ଚର୍ଚ୍ଚା ସାବାସ୍ ସାବାସ୍' ଓ ଗଙ୍ଗାଧରଙ୍କ 'ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର' କବିତାରେ ବ୍ୟଙ୍ଗବିଦ୍ରୂପ ପରିବେଷଣ

କରିପାରିଛନ୍ତି ଏବଂ ଏ ଯୁଗର କବିମାନେ ସାମାଜିକ ମୂଲ୍ୟବୋଧ ପ୍ରତି ଦୃଷ୍ଟି ଦେଇ 'ହିଉମର' ବ୍ୟଙ୍ଗାତ୍ମକ କବିତା ରଚନା କରିଥିଲେ ।

(ଙ) **ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ ଓ ଉପଧା ମିଳନ**— ରାଧାନାଥ ପ୍ରାଚୀନ କାବ୍ୟର ଶବ୍ଦାଡ଼ମ୍ବର ଓ ଅଳଙ୍କାରିତାକୁ ପରିହାର କରି ସହଜ ଓ ସରଳ ଭାଷାରେ ଭାବ ପ୍ରକାଶ କରିଅଛନ୍ତି । ତାଙ୍କ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦ ( Blank verse ) ଓ ଉପଧା ମିଳନ ଏକ ଅଭିନବ ସୃଷ୍ଟି । ଓଜସ୍ୱିନୀ ଭାଷା, ବଳିଷ୍ଠ ଭାବ, ଜୀବନର ଉଷ୍ମତା ଓ ବୈପ୍ଳବିକ ବିଚାର ପ୍ରକାଶ ପାଇଁ ଅମିତ୍ରାକ୍ଷର ଛନ୍ଦ ହିଁ ଉପଯୁକ୍ତ ଛନ୍ଦ । ସମାଲୋଚକଙ୍କ ମତରେ 'Blank verse remains close to real life'. ତେଣୁ ରାଧାନାଥ ଇଂରେଜ ସାହିତ୍ୟର ମହାକବି ମିଲ୍‌ଟନ୍‌ଙ୍କ 'Paradise Lost', ବଙ୍ଗୀୟ କବି ମାଇକେଲ୍ ମଧୁସୂଦନ ଦତ୍ତଙ୍କ 'ମେଘନାଦବଧ' ପ୍ରଭୃତି କାବ୍ୟର ପ୍ରଭାବରେ ଅମିତ୍ରାକ୍ଷର ଛନ୍ଦ ପ୍ରଚଳନ କରି 'ମହାଯାତ୍ରା' ରଚନା କରିଥିଲେ । କବିତାକୁ ଅଧିକ ଲଳିତ, ମଧୁର ଓ ସୁଶ୍ରାବ୍ୟ କରିବାପାଇଁ ସେ 'ଉପଧା ମିଳନ'ର ପ୍ରଚଳନ କରିଅଛନ୍ତି । ଯଥା—

'ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା ।'

ଏଥିରେ କେବଳ ଯେ ପ୍ରଥମ ଧାଡ଼ିର ଶେଷ ଅକ୍ଷର ଓ ତାହାର ବର୍ଣ୍ଣ ସହିତ ଦ୍ୱିତୀୟ ଧାଡ଼ିର ଶେଷ ଅକ୍ଷର ଓ ବର୍ଣ୍ଣ ସହିତ ମେଳ ଘଟିଛି, ତାହା ନୁହଁ ଶେଷ ଅକ୍ଷରର ପୂର୍ବ ଅକ୍ଷରରେ ଯୁକ୍ତ ସ୍ୱରବର୍ଣ୍ଣ ସହିତ ଦ୍ୱିତୀୟ ଧାଡ଼ିର ଶେଷ ଅକ୍ଷର ପୂର୍ବେ ଥିବା ଅକ୍ଷରରେ ଯୁକ୍ତବର୍ଣ୍ଣର ମେଳ ଘଟିଛି ।

(ଚ) **ଗୀତିକବିତା ଓ ଚତୁର୍ଦ୍ଦଶପଦୀ କବିତା ( Sonnet ) ର ପ୍ରଚଳନ**—ଏ ଦିଗରେ ରାଧାନାଥ ପ୍ରଥମେ ଆଗ୍ରହ ପ୍ରକାଶ କରିଅଛନ୍ତି କିନ୍ତୁ ଭକ୍ତକବି ମଧୁସୂଦନ ଜଣେ ଶ୍ରେଷ୍ଠ ଗୀତିକବି ହିସାବରେ ନିଜର ପରିଚୟ ଦେଇଅଛନ୍ତି । ସେ ପରମେଶ୍ୱର ପ୍ରତି ପ୍ରୀତି ପ୍ରଦର୍ଶନ କରି ଆଧ୍ୟାତ୍ମିକତା ଓ ନୈତିକତାର ବିକାଶ ପାଇଁ ମନପ୍ରାଣ ଢାଳିଥିଲେ । ଔପନିଷଦ-ଅନ୍ତର୍ବାଣୀ ହିଁ ମଧୁସୂଦନଙ୍କ କବି ପ୍ରାଣର ମର୍ମବାଣୀ ଏବଂ ତାକୁ ସେ ଅତି ସୁନ୍ଦରଭାବେ ପ୍ରଚାର କରିଛନ୍ତି ତାଙ୍କ

କବିତାଗୁଡ଼ିକରେ । ବ୍ରହ୍ମବାଦୀ ମଧୁସୂଦନଙ୍କ 'ଏ ସୃଷ୍ଟି ଅମୃତମୟ ହେ', 'ରହି ପ୍ରାଣେ ଦେବାର୍ଚ୍ଚନରଣ' କବିତା ଉପନିଷଦର ଯାହା କିଛି ପରମ ନିର୍ଯ୍ୟାସ ତାହାକୁ ନେଇ ଲିଖିତ । ଏହା ପାଠକ ପ୍ରାଣରେ ନୂତନ ସ୍ପନ୍ଦନ ସୃଷ୍ଟି କରିଥାଏ, ଏବଂ ମନରେ ଦିବ୍ୟ ଜୀବନର ଚେତନା ଉଦ୍ରେକ କରିଥାଏ । ସେ ଜୀବନକୁ ଦାର୍ଶନିକ ଦୃଷ୍ଟିକୋଣରୁ ଦେଖି ଆଧ୍ୟାତ୍ମିକତାର ପ୍ରକାଶ କରିଛନ୍ତି 'ଜୀବନ ଚିନ୍ତା' କବିତାରେ । ବାସ୍ତବିକ ଦେଖିବାକୁ ଗଲେ ଓଡ଼ିଆ ସାହିତ୍ୟରେ ମଧୁସୂଦନଙ୍କ ଗୀତିକବିତା ଓ ଚତୁର୍ଦ୍ଦଶପଦୀ କବିତା ଏକ ଅଭିନବ ସୃଷ୍ଟି । ସେ ଏଥିର ନବପ୍ରବର୍ତ୍ତକ । 'ବସନ୍ତ ଗାଥା' ଓ 'କୁସୁମାଞ୍ଜଳି'ରେ କବିଙ୍କ ଶ୍ରେଷ୍ଠ ଗୀତିକବିତା ଓ Sonnets ଦେଖିବାକୁ ମିଳେ । ଏହି Sonnets ସେକ୍ସପିୟର ଓ ଓ୍ୱାର୍ଡ୍ସଓ୍ୱାର୍ଥଙ୍କ Sonnets ସହିତ ରସବୋଧ, ଭାବ ଓ କଳା ଦୃଷ୍ଟିରୁ ତୁଳନା କରାଯାଇପାରେ । ମଧୁସୂଦନଙ୍କ ଗୀତିକବିତା ବ୍ୟକ୍ତି ପ୍ରଧାନ ବା ବ୍ୟକ୍ତିର ମନୋଭାବମୂଳକ ଗୀତିକବିତା । ଏହି ଶ୍ରେଣୀର ଗୀତିକବିତା ଓଡ଼ିଆ ସାହିତ୍ୟରେ ପୂର୍ବରୁ ବିରଳ କହିଲେ ଚଳେ ।

ଗୀତିକାର ଫକୀରମୋହନ ୧୮୯୨ ଠାରୁ ୧୯୧୨ ସାଲ ଯାଏଁ ବିଭିନ୍ନ ସମୟର ବିଭିନ୍ନ ଅବସ୍ଥା ପ୍ରତି ଲକ୍ଷ୍ୟକରି ଜୀଅନ୍ତା ଅନୁଭୂତିକୁ ନେଇ କବିତା ସୃଷ୍ଟି କରିଅଛନ୍ତି ।

'ପୁଷ୍ପମାଳା', 'ଉପହାର', 'ଅବସର ବାସରେ', 'ପୂଜାଫୁଲ' ଓ 'ଧୂଳି'—ଏହିସବୁ ବହିରେ ଯେଉଁସବୁ କବିତା ପ୍ରକାଶ ପାଇଛି ସେହିସବୁ କବିତା ସ୍ରଷ୍ଟା-ପ୍ରାଣର ଗଭୀର ଆବେଗକୁ କେନ୍ଦ୍ରକରି ପ୍ରକାଶିତ ।

'ଉପହାର'ରେ ଥିବା କବିତାଗୁଡ଼ିକ ସେନାପତିଙ୍କ ପତ୍ନୀ ବିୟୋଗ-ଜନିତ ଦୁଃଖ ଉପରେ ପ୍ରତିଷ୍ଠିତ । ଫକୀରମୋହନ ତାଙ୍କ 'ଆତ୍ମ ଜୀବନୀ'ରେ ଲେଖିଅଛନ୍ତି "ଡୋମପଡ଼ାରେ କର୍ମ କରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣକୁମାରୀ ପରଲୋକ ଗମନ କଲେ । ମୋର ସେହି ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହେଲା ତାହାହିଁ ମୁଁ 'ପୁଷ୍ପମାଳା' ଏବଂ 'ଉପହାର' ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।" × × "ମୋର ଅଧିକାଂଶ କବିତା ଦାରୁଣପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟରେ ଲେଖା ।" ଅଧିକାଂଶ କବିତାରେ ଫକୀରମୋହନଙ୍କ ବ୍ୟକ୍ତିମାନସ ମୁଖ୍ୟ ଭାବେ ଦେଖା-

ଦେଇଛନ୍ତି । ଟୀକାକାର ଫକୀରମୋହନଙ୍କ କବିତା କବି ପ୍ରାଣର ଆବେଗ, ଉଚ୍ଛ୍ୱାସ, ଆଧ୍ୟାତ୍ମିକତା, ମାନବିକତା ଓ ସମ୍ବେଦନଶୀଳତାର ଗାମ୍ଭିମନ୍ତ ଓ ସ୍ପଷ୍ଟ ସ୍ୱାକ୍ଷର ବହନ କରେ ।

ସ୍ୱଭାବଗ୍ରାହକ କବି ରାଧାନାଥ, ଭକ୍ତକବି ମଧୁସୂଦନ ଓ ମାନବବାଦୀ ଫକୀରମୋହନଙ୍କ ମିଳିତ ସଙ୍ଗଠନ ଓ ସାଧନା ଫଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ନୂତନ ଯୁଗର ସୂତ୍ରପାତ ହେଲା, ସେହି ଯୁଗର ଚେତନା ଓ ପ୍ରେରଣା ପରବର୍ତ୍ତୀ ଏବଂ ସମସାମୟିକ ବହୁ କବିଙ୍କୁ ପ୍ରଭାବିତ କରିଥିଲା । ପ୍ରକୃତି କବି ଗଙ୍ଗାଧର, ପଲ୍ଲୀକବି ନନ୍ଦକିଶୋର ଓ ଜାତୀୟତାବାଦୀ କବି ଚିନ୍ତାମଣି, ରାଧାନାଥ ଯୁଗର ଚିନ୍ତାଧାରାରେ ବିଶେଷଭାବେ ଅନୁପ୍ରାଣିତ ହୋଇ କାବ୍ୟକବିତା ରଚନା କରିଅଛନ୍ତି ।

ପ୍ରକୃତି କବି ଗଙ୍ଗାଧରଙ୍କ ଲେଖାରେ ରାଧାନାଥଙ୍କ ସୌନ୍ଦର୍ଯ୍ୟବାଦ ସହିତ ମଧୁସୂଦନଙ୍କ ଆଦର୍ଶବାଦର ମଧୁର ମିଳନ ଘଟିଅଛି । କିନ୍ତୁ କବି ନିଜର ଦିବ୍ୟ ପ୍ରତିଭାବଳରେ ମୌଳିକତା ରକ୍ଷାକରି ଭାବର ବିକାଶରେ ଆଧୁନିକତାର ପ୍ରକାଶ କରିଅଛନ୍ତି । ପ୍ରକୃତିର ଜୀବନ୍ତ ଓ ବହୁମୁଖୀ ଚିତ୍ରଣ କେବଳ ଗଙ୍ଗାଧରଙ୍କ ରସମୟୀ ଲେଖନୀରେ ସମ୍ଭବ ହୋଇପାରିଛି । ଗଙ୍ଗାଧରଙ୍କ 'ପ୍ରକୃତି' ଶାଶ୍ୱତ ଓ ଜୀବନ୍ତ । ରାଧାନାଥଙ୍କ ପ୍ରକୃତି ଯେପରି 'Photographic' ଗଙ୍ଗାଧରଙ୍କ ପ୍ରକୃତି ଚିତ୍ରଣ ସେହିପରି ହୋଇନାହିଁ । କବି ପ୍ରକୃତିକୁ ହସେଇଛନ୍ତି, କନ୍ଦେଇଛନ୍ତି ଏବଂ ନଚେଇଛନ୍ତି । Wordsworth, Keats, Byron ଯେଉଁ ଦୃଷ୍ଟିରୁ ପ୍ରକୃତିକୁ ଦେଖିଛନ୍ତି ଗଙ୍ଗାଧରଙ୍କ ପ୍ରକୃତି ଚିତ୍ରଣରେ ସେହି ସମସ୍ତ ଦୃଷ୍ଟିଭଙ୍ଗୀ ଏକାଧାରରେ ରୂପାୟିତ । କବିଙ୍କର 'ତପସ୍ୱିନୀ', 'ପ୍ରଣୟବଲ୍ଲରୀ' ଓ 'କୀଚକବଧ' କାବ୍ୟରେ ଜୀବନ୍ତ ପ୍ରକୃତି ଚିତ୍ରଣ ଦେଖିବାକୁ ମିଳେ । ପ୍ରକୃତି ଚିତ୍ରଣ ସହିତ ତପୋବନ ସଂସ୍କୃତି, ଆଧ୍ୟାତ୍ମିକ ଚେତନା, ଶାଶ୍ୱତ, ପବିତ୍ର ସ୍ୱର୍ଗୀୟ ପ୍ରେମ ଓ ଆଦର୍ଶ ନାୟକନାୟିକାର ଜୀବନ୍ତ ଚିତ୍ର ଏହିସବୁ କାବ୍ୟରେ ଚିତ୍ରିତ । କିନ୍ତୁ 'ଅର୍ଘ୍ୟଥାଳୀ'ର କବି ଗଙ୍ଗାଧର ଜଣେ ବିପ୍ଳବୀ, ଜାତୀୟତାବାଦୀ ଓ ସଂସ୍କାରବାଦୀ ରୂପେ ସମାଜରେ ଦେଖା ଦେଇଛନ୍ତି । ତତ୍କାଳୀନ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଜୀବନରେ ବିପର୍ଯ୍ୟୟ ଦେଖି ସେଥିରେ

ଯେ ଶିକ୍ଷିତ ରହି ତାହାର ଆଶୁ ସମାଧାନ ପାଇଁ ଉଦ୍‌ବୋଧନ ଦେଇଛନ୍ତି ଯୁବ ସମାଜକୁ ।

ଗଙ୍ଗାଧରଙ୍କ ସମସାମୟିକ କବି ନନ୍ଦକିଶୋରଙ୍କ କବିତାଗୁଡ଼ିକ ସ୍ୱତଃସ୍ଫୂର୍ତ୍ତ ଭାବଧାରାର ପ୍ରକାଶ ମାତ୍ର । ବିଶୁଦ୍ଧ ପଲ୍ଲୀ-ପ୍ରୀତିର ଉଗ୍ର ସ୍ୱରୂପ ଦେଖାଦେଇଛି ପଲ୍ଲୀକବି ନନ୍ଦକିଶୋରଙ୍କ 'ପଲ୍ଲୀଚିତ୍ର' ଓ 'ନିର୍ଝରିଣୀ' ଓଡ଼ିଆ ସମାଜର ବାସ୍ତବଚିତ୍ର ତାଙ୍କ କବିତାରେ ରୂପାୟିତ । କବି ପଲ୍ଲୀ ଜୀବନର ମାଧୁରିମାରେ ବିହ୍ୱଳ ହୋଇ ଗାଇଛନ୍ତି —

"ଶାନ୍ତିମୂର୍ତ୍ତି ଆହେ ପଲ୍ଲୀ ଗ୍ରାମ
ମଧୁରିମାମୟ ତୋର ନାମ,
ନଗରର ଭିନ୍ନ ସୁଖ
ମୋହ ପକ୍ଷେ ଘୋର ଦୁଃଖ
ଆହେ ପ୍ରିୟ ପଲ୍ଲୀ
ତୋ ପଲ୍ଲବମୟ ଅଙ୍କ
ଶ୍ରୁଶ୍ରୂଷିତ ଆଶ୍ରିବାକୁ
ମୁହିଁ ସଦା ରଙ୍କ ।"

ପଲ୍ଲୀଜୀବନ ରୂପାୟନରେ ନନ୍ଦକିଶୋର ସିଦ୍ଧହସ୍ତ । ପଲ୍ଲୀ ପ୍ରାଣର ବିଭିନ୍ନ ଜୀବନଧାରା ଅତି ସରଳ ଭାଷାରେ ପ୍ରକାଶ ପାଇଛି ତାଙ୍କର ବିଭିନ୍ନ କବିତାରେ । ନନ୍ଦକିଶୋରଙ୍କ ଏହି ନୂତନ ଚିନ୍ତାଧାରା ପରବର୍ତ୍ତୀ ବହୁ ଓଡ଼ିଆ କବିଙ୍କ ଉପରେ ପ୍ରଭାବ ପକାଇଅଛି । ସାହିତ୍ୟକୁ ବାସ୍ତବାଭିମୁଖୀ କରିବା ପ୍ରଚେଷ୍ଟା ଫକୀରମୋହନଙ୍କର ଯେତିକି ଥିଲା ନନ୍ଦକିଶୋରଙ୍କର ବି ସେତିକି ସାଧନା ଥିଲା ଏବଂ ଉଭୟ ଲେଖକ ସମାଜର ଗୋଟାଏ ଅବହେଳିତ ଜୀବନଧାରାକୁ ବଳିଷ୍ଠ ଲେଖନୀ ଚାଳନାଦ୍ୱାରା ସାହିତ୍ୟ ମଧ୍ୟରେ ନୂତନ ରୂପରେ ରୂପାୟିତ କରିଅଛନ୍ତି । ସେହି ସମୟରେ ଅନ୍ୟତମ ବିଶିଷ୍ଟ କବି କବିଶେଖର ଚିନ୍ତାମଣି ଜଣେ ଶ୍ରେଷ୍ଠ ସାହିତ୍ୟ ସାଧକ ରୂପେ ଦଣ୍ଡାୟମାନ ହୋଇଥିଲେ । ଦାରିଦ୍ର୍ୟ ଭିତରେ ସଡ଼ି ନାନା ଜଞ୍ଜାଳ ଭିତରେ ଜଡ଼ି କବି ସାହିତ୍ୟ ସୃଷ୍ଟି ପାଇଁ ଅନନ୍ତ ସାଧନା ଓ ଅଧ୍ୟବସାୟକୁ ଜୀବନର ମହାନ୍

ବ୍ରତରୂପେ ମଣିଥିଲେ । ସେ ଜଣେ କାଣ୍ଡପ୍ରବାଷୀ କବି । ଉତ୍କଳର ଭୌଗୋଳିକ, ଐତିହାସିକ ଓ ସାମାଜିକ ଅବସ୍ଥାର ସୂକ୍ଷ୍ମ ବିଶ୍ଳେଷଣ ତାଙ୍କ କାବ୍ୟକବିତାରେ ଦେଖିବାକୁ ମିଳେ । ସେ ପଦେ ପଦେ ରାଧାନାଥଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି; କେବଳ ରାଧାନାଥୀ ଭାବଧାରା ଓ ଚିନ୍ତାଧାରା ଚିନ୍ତାମଣିଙ୍କ ଲେଖାରେ ସୁସ୍ପଷ୍ଟ ।

ରାଧାନାଥ ଯୁଗ ହିଁ ଯଥାର୍ଥରେ ଆଧୁନିକ ପଦ୍ୟ ସାହିତ୍ୟର ପ୍ରାରମ୍ଭିକ ଯୁଗ । ରାଧାନାଥୋତ୍ତର ଯୁଗର କବିମାନେ ବହୁଳଭାବେ ରାଧାନାଥୀ ଯୁଗର ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ନୂତନ ସୃଷ୍ଟି ପରିକଳ୍ପନାରେ ମନୋନିବେଶ କରିଥିଲେ । ରାଧାନାଥୀ ଯୁଗର ଯାହା କିଛି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ, ତାହା ହିଁ ପରବର୍ତ୍ତୀ ପଦ୍ୟ ସାହିତ୍ୟର ଯଥାର୍ଥ ଭିତ୍ତିଭୂମି । ରାଧାନାଥ ଯୁଗରେ ଚିନ୍ତାଧାରା ଓ ରଚନାଶୈଳୀରେ ବୈପ୍ଳବିକ ପରିବର୍ତ୍ତନ ଦେଖା ନ ଦେଇଥିଲେ ହୁଏତ ଆଧୁନିକ ପଦ୍ୟ ସାହିତ୍ୟର ପ୍ରଗତି ଏତେଦୂର ସଫଳ ହୋଇପାରି ନଥାନ୍ତା । ଆଧୁନିକ ଗୀତିକବିତା ଓ ଚତୁର୍ଦ୍ଦଶପଦୀ କବିତାର ଜନ୍ମ ଏହି ସମୟରେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ରାଧାନାଥ ପ୍ରଥମେ ପାଶ୍ଚାତ୍ୟ କବିମାନଙ୍କୁ ଆମ ଆଗରେ ପରିଚୟ କରାଇଲେ ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ ରକ୍ଷାକରି ଏକ ନୂତନ ସୃଷ୍ଟି ଆରମ୍ଭ କରିଥିଲେ । ଏହି ନୂତନ ସୃଷ୍ଟି ପରବର୍ତ୍ତୀ ସ୍ରଷ୍ଟାଙ୍କ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ଫଳରେ ଆଧୁନିକ ପଦ୍ୟ ସାହିତ୍ୟରେ ଆମେ ନୂତନ ଚିନ୍ତା ଓ ନୂତନ ଶୈଳୀ ଦେଖିବାକୁ ପାଉ ।

———

# 'ସ୍ଫୁଲିଙ୍ଗ' ଓ କୁନ୍ତଳାକୁମାରୀ

ଦେଶ ଓ ଜାତିର ଇତିହାସରେ ବେଳେବେଳେ ଏପରି ସମୟ ଆସେ ସେହି ସମୟ ଦେଶର ପ୍ରତିଭାଶାଳୀ ଓ ଅସାଧାରଣ ଶକ୍ତିସମ୍ପନ୍ନ ବ୍ୟକ୍ତିମାନଙ୍କୁ ଚିରସ୍ମରଣୀୟ ଏବଂ ସ୍ପନ୍ଦିତ କରିଦିଏ । ସମୟର ସ୍ପନ୍ଦନ, ଜାତିର ସଙ୍କଟବେଳାର ଘନ ଘନ ଆହ୍ୱାନ ଜାତି ଓ ଦେଶର ନରନାରୀଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥାଏ । ଫଳରେ ବ୍ୟକ୍ତି ଜାତିର କଲ୍ୟାଣ ପାଇଁ ଆତ୍ମତ୍ୟାଗର ପୂଜାପୀଠରେ ସାଧନା ଯଜ୍ଞ ଆରମ୍ଭ କରେ; ବ୍ୟକ୍ତି ସେତେବେଳେ ଜାତିକୁ ଗ୍ରହଣ କରେ ଏବଂ ବ୍ୟକ୍ତିର ଭୁଙ୍ଗ କ୍ରିୟାକଳାପ ଜାତିର ମହତ୍ତର ଲକ୍ଷ୍ୟସାଧନ ଦିଗରେ ଉଦ୍ଦିଷ୍ଟ ହୋଇଥାଏ ।

ସାହିତ୍ୟ ଜଗତରେ ମଧ୍ୟ ଏହା ଏକ ନିରିଟ ସତ୍ୟ । ସମୟର ପଦଧ୍ୱନି ଜାତିର ସାହିତ୍ୟକୁ ଯୁଗେ ଯୁଗେ ଯଥେଷ୍ଟ ଭାବେ ପ୍ରଭାବିତ କରିଛି । ବିଭିନ୍ନ ଯୁଗର ସାହିତ୍ୟିକମାନଙ୍କ ଚିନ୍ତାଧାରା ମୂଳରେ ସମୟର ପ୍ରଭାବ ଅବଶ୍ୟ ସ୍ୱୀକାର୍ଯ୍ୟ ।

ଅଷ୍ଟାଦଶ ଶତାବ୍ଦୀରୁ ପୃଥିବୀର ଭିନ୍ନ ରାଜ୍ୟରେ ଯେଉଁ ବିପ୍ଳବ ଦେଖା ଦେଇଥିଲା, ତାହା ବିଭିନ୍ନ ଦେଶର ସାହିତ୍ୟକୁ ଅବଲମ୍ବନ କରି ଆତ୍ମପ୍ରକାଶ କଲା । ଜୀବନକୁ ପୂର୍ଣ୍ଣଭାବେ ଜାଣିବା ଏବଂ ଜୀବନର ସୌନ୍ଦର୍ଯ୍ୟକୁ ଉପଲବ୍ଧି କରିବା ପ୍ରଶ୍ନ ପ୍ରତ୍ୟେକ ପ୍ରଗତିଶୀଳ ଲେଖକଙ୍କ ମନରେ ଜାଗି ଉଠିଲା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରେଜ ଶାସିତ ଭାରତରେ ଏକ ନୂତନ ଭାବ ଆତ୍ମପ୍ରକାଶ କଲା । ପ୍ରଥମ ମହାଯୁଦ୍ଧ, ବ୍ରିଟିଶ୍ ଶାସନର ଦମନ, ଶୋଷଣ ଓ ଅତ୍ୟାଚାର ଭାରତର ଜନଶକ୍ତି ମଧ୍ୟରେ ନବଜାଗରଣର ସୂତ୍ରପାତ କଲା । ଜାତିର ଜନକ ଗାନ୍ଧିଜୀଙ୍କ 'ଅସହଯୋଗ ଆନ୍ଦୋଳନ',

ଅହିଂସା, ସତ୍ୟାଗ୍ରହ ପ୍ରଭୃତି ଭାରତୀୟ ଚିନ୍ତାଧାରାରେ ବୈପ୍ଳବିକ ପ୍ରଭାବ ପକାଇଲା ଏବଂ ସାହିତ୍ୟର ଆଭିମୁଖ୍ୟ ବଦଳିଗଲା । ଏହି ନୂତନ ଯୁଗର ନୂତନ ଚେତନା ନେଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନାରୀ କବି କୁନ୍ତଳାକୁମାରୀ ଲେଖନୀ ଚାଳନା କଲେ । ୧୯୨୦-୩୦ ସାଲ 'ସ୍ଫୁଲିଙ୍ଗ' ପରି ତାଙ୍କର ସାହିତ୍ୟ ସୃଷ୍ଟି ପାଇଁ ଉପଯୁକ୍ତ କ୍ଷେତ୍ର ଯୋଗାଇଥିଲା । କେବଳ କୁନ୍ତଳାକୁମାରୀ ନୁହଁନ୍ତି ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁ ଦେଶାତ୍ମ-ବୋଧର ଆଦର୍ଶ ନେଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆବିର୍ଭୂତ ହୋଇଛନ୍ତି । ନୂତନ ଯୁଗର ଉଗ୍ର ଜାତୀୟ ଚେତନାକୁ ଭିତ୍ତିକରି ଦେଶପ୍ରେମୀ କବି ମଧୁସୂଦନଙ୍କ କଣ୍ଠରୁ ଝରିଥିଲା—

ଜାତି ଇତିହାସ ଜାତିର ନିର୍ଝର,
ଚିର୍ନ୍ତି ଝରେ ସଦା ଜାତି ପ୍ରାଣ ଧାର
ଯେ ଧାରରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି କର୍ମବୀର ।

× ×

"ଭୂମିକମ୍ପ ହେବ, ଧରଣୀ ଫାଟିବ ଉଠେବେ ସହସ୍ର ଭୁଜା
ସେହି ତୋର ମାତା, ସେହି ତୋର ଭ୍ରାତା କର ସେହି ପଦପୂଜା ।"

ଉତ୍କଳମଣିଙ୍କର 'କାରକବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ଏବଂ ବକୁଳକୁଞ୍ଜର ସତ୍ୟବାଦୀ ସାହିତ୍ୟ ଅସହଯୋଗ ଆନ୍ଦୋଳନର ଅଗ୍ନିମୟ ମୁଖବନ୍ଧ ସହିତ ପ୍ରକାଶ ପାଇଥିବା ଏକ ବିପ୍ଳବାତ୍ମକ ଇତିହାସ । ଦରଦୀ କବି ଗୋପବନ୍ଧୁ ତତ୍କାଳୀନ ଯୁବସମାଜକୁ ଉଦ୍‌ବୋଧନ ଦେଇ କହିଥିଲେ :-

"ଥରେ ଭଲ ଭାଇ ମନରେ ବିଚାର
କପାଁଇ ମହାତ୍ମା ଏତେ ନାରଖାର!
କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ
ତେଜି ଧନ, ଜନ, ଅଶନ ବ୍ୟସନ

× × ×

"ପିନ୍ଧ ଦେଶୀ ଲୁଗା ହେଉ ଅଙ୍ଗ ଶୁଦ୍ଧି
ମାମଲରେ ଆଉ ନ ବଳାଅ ବୁଦ୍ଧି ।"

ଯୁଗେ ଯୁଗେ ସାହିତ୍ୟ ସମାଜ, ଜାତି ଓ ରାଷ୍ଟ୍ରକୁ ନେଇ ଗଢି ଉଠିଥାଏ ଏବଂ ଜୀବନର ସର୍ବାଙ୍ଗୀନ ପ୍ରକାଶ ପାଇଁ ଜୀବନରେ ଯେଉଁ ଆଦର୍ଶ ଓ ବାସ୍ତବତାର ସଙ୍ଘର୍ଷ ଲାଗି ରହିଥାଏ ତାହାର ସମାଧାନ ପ୍ରତି ସୂଚେତନ ରହେ । ନିତିଦିନିଆ ଜୀବନର ଅଭାବ, ଅଭିଯୋଗ, ରାଷ୍ଟ୍ରୀୟ ସମସ୍ୟାଗତ ପ୍ରଶ୍ନ ଏବଂ ଆଦର୍ଶଗତ ଚିନ୍ତା ସାଧାରଣତଃ ଜାତୀୟ ସାହିତ୍ୟର ପ୍ରାଣବିନ୍ଦୁ । ଏହିଭଳି ସାହିତ୍ୟ ରାଷ୍ଟ୍ର ତଥା ସମାଜ ଉପରେ ପ୍ରଭାବ ବିସ୍ତାର କରିଥାଏ ।

ବିଶ୍ୱର ସମସ୍ତ ଦେଶର ସଙ୍କଟମୟ ମୁହୂର୍ତ୍ତରେ ପ୍ରଭାବଶାଳୀ ଜାତୀୟତାବାଦୀ ଲେଖକ ଜନ୍ମ ଲଭିକରି ସମାଜର ପରିବର୍ତ୍ତନ ଘଟାଇଛନ୍ତି । ସେମାନେ ଯଥାର୍ଥରେ ନୂତନ ସୃଷ୍ଟିର ସନ୍ଧାନୀ । ବାସ୍ତବିକ୍ ସେମାନଙ୍କ ଚିନ୍ତାଧାରା ରାଷ୍ଟ୍ର ଓ ସମାଜକୁ ପରିବର୍ତ୍ତନ କରିଅଛି । ପାଶ୍ଚାତ୍ୟ ଲେଖକ ରୁଷୋ, ଗର୍କୀ, ଟଲଷ୍ଟୟ, ରୋମାରୋଲାଁ ଯେପରି ଭାରତୀୟ ଲେଖକ ଗାନ୍ଧୀ, ନେହେରୁ, ରବୀନ୍ଦ୍ରନାଥ, ସରୋଜିନୀ ନାଇଡୁ ସେହିପରି ସାହିତ୍ୟ ମାଧ୍ୟମରେ ଦେଶାତ୍ମବୋଧର ଆଦର୍ଶ ପ୍ରଚାର କରି ଜାତୀୟ ଜୀବନର ବିଭିନ୍ନ ସମସ୍ୟାର ସମାଧାନ ପାଇଁ ନୂତନ ଦିଗନ୍ତ ସୃଷ୍ଟି କରିଅଛନ୍ତି । ଆମ ଓଡ଼ିଆ ସାହିତ୍ୟରେ ଠିକ୍ ସେହିପରି ରାଧାନାଥ, ମଧୁସୂଦନ, ଫକୀରମୋହନ, ଗୋପବନ୍ଧୁ ଓ କୁନ୍ତଳାକୁମାରୀ ଜାତିକୁ ନୂତନ ଆଦର୍ଶରେ ଅନୁପ୍ରାଣିତ କରିବା ପାଇଁ ପ୍ରେରଣା ଯୋଗେଇଛନ୍ତି ।

ଉତ୍କଳ ଭାରତୀ କୁନ୍ତଳାକୁମାରୀଙ୍କ 'ସ୍ଫୁଲିଙ୍ଗ' ନୂତନ ଚିନ୍ତା ଓ ଆଦର୍ଶର ଏକ ଜୀବନ୍ତ ଆଲେଖ୍ୟ । ଏହା ୧୯୨୯ ସାଲରେ ପ୍ରକାଶ ପାଇଛି ଏବଂ ଏଥିରେ କବିଙ୍କର ୨୯ ଗୋଟି କବିତା ସ୍ଥାନ ପାଇଛି । ଅଧିକାଂଶ କବିତାରେ କବି ଦେଶାତ୍ମବୋଧ, ମହାଜାତୀୟତା ବା ମହାମାନବିକତାର ପ୍ରଚାର କରିଅଛନ୍ତି । ଡଃ କୁଞ୍ଜବିହାରୀ ଦାଶଙ୍କ ମତରେ, "ଏହାର (ସ୍ଫୁଲିଙ୍ଗ) ପ୍ରଥମାଂଶ ଉଦ୍‌ବୋଧନ କବିତା, ଶେଷାଂଶରେ କବି ରହସ୍ୟବାଦୀ ହୋଇଛନ୍ତି ।" ପ୍ରଥମେ 'ଚରଣେ ଆବାହନ' କବିତାଟିରେ ଲେଖିକା

ନିଜ ଜନ୍ମଭୂମିର ସ୍ମରଣ ରୂପେ ଦେଶର ସୁପ୍ତ, ନିଷ୍କ୍ରିୟ ଯୁବଶକ୍ତିକୁ ଆଶାର ବାଣୀ ଶୁଣାଇ ଗାଇଛନ୍ତି—

'ଅନଙ୍ଗ, ଯଯାତି ଆସିବେ ତ ଫେରି,
ବାଜିବ ଓଡ଼ିଆ ଜୟ ତୂରୀ ଭେରୀ !
ଜାଗିଅଛୁ ଆଜ ତରୁଣ କେଶରୀ
ନୀଳାଚଳ ପୁଣ୍ୟ ତଟେ ।
ବନ୍ଦନା ଗୀତି ଗାଇଅଛୁ ଜନତରଙ୍ଗ ସାଗର କୂଳେ ।"

ଏହି କବିତାଟିରେ ଅବସାଦ କିମ୍ବା ଅନୁତାପ ପାଇଁ ସମୟ ନାହିଁ; ବରଂ ଛନ୍ଦେ ଛନ୍ଦେ ପ୍ରକାଶ ପାଇଛି ସାନ୍ତ୍ୱନା, ଉଦ୍ଦୀପନା ଓ ଆଶାବାଦର ଧ୍ୱନି । ଭାରତର ଅତୀତ ଗୌରବ ପ୍ରତି ସ୍ମରଣ କରାଇ ସୁପ୍ତ ଜାତିକୁ ଜାଗ୍ରତ କରିବା ପାଇଁ କବି କହିଛନ୍ତି—

'ଦେଢ଼ କୋଟି ଭାଇ ଉଠ ହେ ଓଡ଼ିଆ,
କିପାଇଁ ମରିବ ଶରି ?'

'ତରୁଣର ଆବାହନ' କବିତାର ଅନୁବର୍ତ୍ତୀ ହୋଇ କବି 'ସାନ୍ତ୍ୱନା', 'ସୁପ୍ରଭାତ', 'ସ୍ୱପ୍ନ', 'ସାହସ', 'ସୌଭାଗ୍ୟ', 'ଅଭିଶପ୍ତର ଅଭିମାନ' ଓ 'ହାହାକାର' ପ୍ରଭୃତି କବିତା ଲେଖିଥିଲେ ମନେହୁଏ । କବି କୁନ୍ତଳାକୁମାରୀ ପ୍ରଥମେ ତରୁଣତରୁଣୀମାନଙ୍କୁ ଯେଉଁ ଶୁଭ ଉଦ୍‌ବୋଧନ ଶୁଣାଇ ଲେଖନୀ ଚାଳନ କରିଥିଲେ ସେହି ଉଦ୍‌ବୋଧନକୁ ପ୍ରତିଷ୍ଠା କରିବା ପାଇଁ ସେ ସାନ୍ତ୍ୱନା ବାଣୀ ଶୁଣାଇଅଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ କୋଟି ନରନାରୀ ସମ୍ମୁଖରେ ବହୁଦିନର ଆକାଂକ୍ଷିତ ସୁପ୍ରଭାତର ଚିତ୍ର ଚିତ୍ରଣ କରିଛନ୍ତି । 'ସାନ୍ତ୍ୱନା' କବିତାର ଆଶାବାଦ, ଆନନ୍ଦବାଦ, ଦେଶର ଦୁରବସ୍ଥା ଦୂରୀଭୂତ ହେବାର ଯେଉଁ ବଦ୍ଧମୂଳ ଧାରଣା ତାହା 'ସୁପ୍ରଭାତ' କବିତାଟିରେ ପ୍ରତିଫଳିତ ହୋଇଛି—

'ସ୍ୱାହାଁ । ସ୍ୱାହାଁ । ଉଠେ ସ୍ୱର୍ଗୁ ମିହିର,
ତେଜ ଜଡ଼ତା ଉଠ ହେ ଧୀର,
ଉଠ ହେ ଧୀରେ କରମ୍ ବୀର ।

ନବ ପ୍ରଭାତ, ନବ ଅମୃତେ
ନବ ଜୀବନ ଦେବଟି ମୃତେ
ତେଜ ଅନ୍ତେ ଉଜ୍ଜ୍ୱଳ ସୁତେ
ଦୂର କର ଅନ୍ଧ-ନୟନ-ତିମିର ।

ସୁପ୍ରଭାତ ପ୍ରବନ୍ଧରୁ ଯେଉଁ ଜୟଯାତ୍ରା ଆରମ୍ଭ ହୋଇଥିଲା ତାହା 'ଗ୍ରୀଷ୍ମ' କବିତାରେ ରୂପାୟିତ ହୋଇଛି । ତେଣୁ କବି ତରୁଣ ଯାତ୍ରୀ ଦଳକୁ ସମ୍ବୋଧନ କରି କହିଛନ୍ତି—

'କ୍ଷୁଦ୍ର ଦୀପଟି ତେଜ ଧରି ଭାଇ
ଦଣ୍ଡେ ଗୁଡ଼ି ହେବ ସୁପ୍ରଭାତ ।'

'ବିଷାଦରର ବିଶ୍ୱାସ' କବିତାରେ ବିଷାଦିତ, ପରାଧୀନ ଚତୁର୍ଦ୍ଦଶଶକ୍ତି କପରି ବିଷାଦରେ ବିଶ୍ୱାସ ଓ ଆଶଙ୍କାରେ ଆଶା ପ୍ରକାଶ କରୁଛନ୍ତି, ତାହା ନାରୀ କବି ଅତି ସୁନ୍ଦର ଭାବେ ବୁଝାଇବାକୁ ଯାଇ କହିଛନ୍ତି—

'ଶରୀ ମାଘ ନଥିବଟି ଏ ପୋଡ଼ା ଜୀବନେ,
ଆସିବ ଫଗୁଣ ନଶା ଦକ୍ଷିଣା ପବନେ ।

× ×

ଜନମ ଜନମ କା'ର ନପିବ ବିଫଳ,
ହତଶ୍ୱାସେ ଭାଲ ଭାଗ୍ୟ ସଙ୍ଗେ କରି କଳ ।
ଧରଣୀ ଧୂଳରେ
ଛିଣ ସୃଷ୍ଟି ସାର ନର ଯିବ କି ମିଶିରେ,
ଏହି ତାର ଶେଷ ?
ନୁହେଁ ନୁହେଁ ଅଛି ଭାଇ ଜୀବନ ଅଶେଷ ।'

କେବଳ ଏତିକରେ ସନ୍ତୁଷ୍ଟ ନହୋଇ କବି ପୁଣି ଆଶାବାଦର ପ୍ରଚାର କରି ଗାଇଛନ୍ତି—

'ଜାଣେ ଏ ଜୀବନ ନୁହେଁ
ଜଳର ବୁଦ୍ ବୁଦ୍,
କେତ ନବ କର୍ତ୍ତବ୍ୟରେ
ହେବ ମୁଁ ଉଦ୍‌ବୁଦ୍ଧ ।'

କବିଙ୍କର ଦୃଢ଼ବିଶ୍ୱାସ ମାନବ ମାଟିର ଖେଳନା ନୁହେଁ କମ୍ବା ମଣିଷର ଜନ୍ମ, ମୃତ୍ୟୁ ପାଇଁ ନୁହେଁ । ସୁଖ, ଦୁଃଖ ପାଇଁ ନୁହେ ଏବଂ ବିଷାଦ ମାନବର ଶେଷ ଚିହ୍ନ ନୁହେ କମ୍ବା ଅଦୃଷ୍ଟ ଶକ୍ତିଦ୍ୱାରା ମଣିଷ ଚାଳିତ ହେଲେ ବି ଅଦୃଷ୍ଟ ଶକ୍ତି ଜୀବନକୁ ଚିରଦିନ ପାଇଁ ଦୁଃଖରେ ଆବଦ୍ଧ କରି ରଖିପାରିବନି । ପ୍ରକୃତିରାଜ୍ୟରେ ମଧ୍ୟ ଶୀତ ପରେ ବସନ୍ତ, ମଳୟର ପଦଧ୍ୱନି, କୋକିଳର କାକଳୀ ସମ୍ଭବପର ହୋଇଥାଏ । ତେଣୁ ଇଂରେଜ କବି ସେଲି 'Ode to Westwind' କବିତାରେ ଲେଖିଯାଇଛନ୍ତି—

"If winter comes,
Can spring be far behind ?"

କୁନ୍ତଳାକୁମାରୀ ଠିକ୍ ଏହି ସ୍ପୃହାରେ ଆଶାବାଦ ଓ ଭବିଷ୍ୟତର ଉଜ୍ଜ୍ୱଳ ଚିତ୍ର ଏହି କବିତାଟିରେ ପ୍ରକାଶ କରିଛନ୍ତି । 'ବିପ୍ଳାବିତର ବିଶ୍ୱାସ' ପରି 'ଅଭିଶପ୍ତର ଅଭିମାନ' କବିତାଟି କେତେବେଳେ ଅଭିଯୋଗ, କେତେବେଳେ ଅଭିମାନ ଏବଂ ଆଉ କେତେବେଳେ ମୃଦୁ ବିପ୍ଳବର ସ୍ୱର ନେଇ ଆତ୍ମପ୍ରକାଶ କରିଛି । ଲେଖିକା ସତେ ଯେପରି ନିଜର ପାଠକପାଠିକାମାନଙ୍କୁ ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ଅବସ୍ଥାକୁ ସାଦରେ ଗ୍ରହଣ କରି ନେବାପାଇଁ ଇଙ୍ଗିତ ଦେଇଛନ୍ତି । ଏଥିରେ ପୌରାଣିକ ବିଷୟବସ୍ତୁ ଓ କିମ୍ବଦନ୍ତୀ ଉଲ୍ଲେଖ କରି ଅତୀତର ଗୌରବ, ପରଂପରା ଓ ଐତିହ୍ୟ ପ୍ରତି ସ୍ମରଣ କରାଇ ଦେଇ ଅତି ସାହସର ସହିତ ସେ ଗାଇ ଉଠିଛନ୍ତି--

"ନିବିଡ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବି ଚିରଦିନ ଖଣ୍ଡ ହାହାକାରେ ।

× ×

ଅମୃତ ଆନନ୍ଦେ ମୁକ୍ତି ଅନନ୍ତ ଜୀବନେ
ଜାଗିବ ଜାଗିବ, ଯାପ୍ତଆଶା ମୋର ମନେ ।"

'ସାହସ', 'ସୌଭାଗ୍ୟ' ଓ 'ନିଃସ୍ୱାର୍ଥ'—ଏହି ତିନୋଟି କବିତାର ସ୍ୱର ପ୍ରାୟ ଏକ । ଏହି କବିତା ସମୂହରେ ନୈତିକତା ପ୍ରତି କବିଙ୍କର ଗଭୀର ଶ୍ରଦ୍ଧା ରହିଛି ଏବଂ ଏହିସବୁ କବିତାରେ କୁନ୍ତଳାକୁମାରୀ ନୈରାଶ୍ୟ ବିରୁଦ୍ଧରେ ସଂଗ୍ରାମ ଘୋଷଣା କରି ବଳିଷ୍ଠ ଆଶାବାଦର ପ୍ରଚାର କରିଅଛନ୍ତି ।

'ମା', 'ଭାରତମାତା', 'ଅଳି', 'ଭାରତ ରମଣୀ' ଓ 'ନାରୀ ଶକ୍ତି' ପ୍ରଭୃତି କବିତାରେ କୁନ୍ତଳାକୁମାରୀଙ୍କ ନାରୀ ପ୍ରାଣ ସୁନ୍ଦର ଭାବେ ଫୁଟି ଉଠିଛି । ଭାରତୀୟ ନାରୀ ଜାତିର ବିଭିନ୍ନ ସମସ୍ୟା ଏହିସବୁ କବିତାରେ ସ୍ଥାନ ପାଇଛି ।

ନାରୀ ସମାଜର ଅଧୋଗତି, ନାରୀ ଜାତିର ଶିକ୍ଷା ଅଭାବ ଏବଂ ସେମାନଙ୍କର ଦୁରବସ୍ଥା ଦେଖି ଲେଖିକା ସତତ ଯେମିତି ଚିନ୍ତିତା ଅଛନ୍ତି ଏବଂ ସେମାନଙ୍କ ନିର୍ଯ୍ୟାତନା ସେ ନିଜେ ଉପଲବ୍ଧି କରିଛନ୍ତି । ସାମ୍ପ୍ରଦାୟିକତା, ନାରୀ ଜାତିର ବିଭିନ୍ନ ସମସ୍ୟା, ଦେଶପ୍ରେମର ଛଳନା ଓ ତରୁଣ ଜୀବନରେ ଅନେକ ଆଦି ଦେଖି ସେ ଅତି ମର୍ମାହତ ହୋଇ ସେହି ସବୁର ସମାଧାନ ଖୋଜିଛନ୍ତି ଏବଂ ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ ହେବାପାଇଁ ବ୍ୟାକୁଳ ପ୍ରାଣରେ ଡାକ ଦେଇଛନ୍ତି । ଲେଖିକା ସମସ୍ତ ଭାଇ ଓ ଭଉଣୀଙ୍କୁ ଧର୍ମ, କର୍ମ ଓ ଜ୍ଞାନ ଆଚରଣପୂର୍ବକ ଅନ୍ତରର କଳୁଷତା ଦୂରକରି ଜୀବନପଥରେ ଅଗ୍ରସର ହେବାପାଇଁ ଅନୁରୋଧ କରିଅଛନ୍ତି ।

'ଭାରତ ରମଣୀ' ଓ 'ନାରୀ ଶକ୍ତି' କବିତାରେ ଲେଖିକା ଭାରତୀୟ ନାରୀ ଜାତିର ଅଧୋଗତି, ଅବନତି, ଦୁଃଖ ଏବଂ ଦୁର୍ଦ୍ଦଶା ବର୍ଣ୍ଣନା କରି ଭାରତୀୟ ନାରୀକୁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି । ସତୀତ୍ୱ, ସହିଷ୍ଣୁତା, ଆତ୍ମଶକ୍ତି ଓ ସେବା ପାଇଁ ଭାରତୀୟ ନାରୀ ଯୁଗେ ଯୁଗେ ଦେଶର ଗର୍ବ ଓ ଗୌରବ । ତେଣୁ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ପୁରୁଷ ସହିତ ସମଭାବରେ ସହଯୋଗ କରି ସମାଜର ଉନ୍ନତି କରିବା ପାଇଁ ଲେଖିକା ନାରୀ ସମାଜକୁ ଉଦ୍‌ବୋଧନ ଦେଇଛନ୍ତି ।

‘ମଣିଷ ଭାଇ’, ‘ଅମୃତ ସନ୍ତାନ’, ‘ମଣିଷପଣିଆ’ ପ୍ରଭୃତି କବିତା ମାନବିକତାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରି ଆତ୍ମପ୍ରକାଶ କରିଛି । ‘ମଣିଷ ଭାଇ’ କବିତାଟି ବୈପ୍ଳବିକ ଚିନ୍ତା ନେଇ ରଚିତ । ମଣିଷର ଜନ୍ମ କେବଳ ହତାଶାରେ ଜଳିପୋଡ଼ି ଧ୍ୱଂସ ହେବା ଉଚିତ ନୁହେଁ; ସେ ଅମୃତ ପିତ୍ର ସନ୍ତାନ । ତେଣୁ ଦୁଃଖ ଓ ଯନ୍ତ୍ରଣାରେ ମ୍ରିୟମାଣ ହୋଇ ଢଳିପିବା ମାନବର ମାନବତ୍ୱ ନୁହେଁ । କବି ସେଥିପାଇଁ ଦୃଢ଼ ସ୍ୱରରେ ଶୁଣାଇଛନ୍ତି—

“ଶୁଣ ହେ ମଣିଷ ଭାଇ !
ଝୁରି ମରିବାକୁ ବୁଡ଼ି ମରିବାକୁ ମଣିଷ ଜନମି ନାହିଁ ।”

‘ମଣିଷପଣିଆ’ କବିତାଟିରେ ବିଶ୍ୱମାନବର ସାର୍ବଜନୀନ ମୌଳିକ ଗୁଣପ୍ରତି କବି ସଚେତନ ଅଛନ୍ତି । ଲେଖିକା ମାନବିକତାକୁ ଜୀବନର ଶ୍ରେଷ୍ଠ ଆଦର୍ଶ ରୂପେ ମଣି ତାହାର ମାଧ୍ୟମରେ ଆଧ୍ୟାତ୍ମିକ ସତ୍ତାର ସନ୍ଧାନ ପାଇଥିବା ମନେହୁଏ । କୁନ୍ତଳାକୁମାରୀଙ୍କ କବିତାଗୁଡ଼ିକରେ ଧର୍ମ, ଭକ୍ତି, ପ୍ରେମ, ରହସ୍ୟବାଦ ଓ ଜାତୀୟତାର ପବିତ୍ର ଜାହ୍ନବୀ ଧାରା ପ୍ରବାହିତ । ସେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପରି ସର୍ବଦା ପ୍ରେମମୟ ବ୍ୟାକୁଳ ଚିତ୍ତରେ ସତ୍ୟ, ଶିବ ଓ ସୁନ୍ଦରର ଚିରନ୍ତନ ପ୍ରତୀକ ଭଗବାନଙ୍କୁ ଡ଼ାକିଛନ୍ତି । ସେ ଯଥାର୍ଥରେ ଜଣେ ରହସ୍ୟବାଦୀ କବି ।

ଯୁଗ ଯୁଗର ଅନ୍ଧକାର ଏବଂ ଆବର୍ଜନାକୁ ଅଗ୍ନି ଯେପରି ଧ୍ୱଂସ କରିଦିଏ, ସେହିପରି ‘ସ୍ଫୁଲିଙ୍ଗ’ର ଭାବଧାରା ମଣିଷର ଅନ୍ଧବିଶ୍ୱାସ ଓ ବଦ୍ଧମୂଳ ଚିନ୍ତାଧାରାକୁ ଜାଳିପୋଡ଼ି ଦିଏ । ଅଧିକାଂଶ କବିତାର ଛନ୍ଦେ ଛନ୍ଦେ ସ୍ୱଦେଶ ଆନ୍ଦୋଳନ ଓ ସତ୍ୟାଗ୍ରହର ଭାବଧାରା ପ୍ରତିଫଳିତ । ବ୍ରିଟିଶ ଶାସନର ସମସ୍ତ ଅତ୍ୟାଚାର, ଶୋଷଣ ଓ ନିର୍ଯ୍ୟାତନା ମଧ୍ୟରେ କବି ଯେପରି ଭାବେ ନିର୍ମଳ ଓ ଶାଶ୍ୱତ ଚିନ୍ତାଧାରାକୁ ଅତି ସାହସର ସହିତ ପ୍ରକାଶ କରିଅଛନ୍ତି, ତାହା ବାସ୍ତବିକ୍ ପ୍ରଶଂସନୀୟ । ‘ସ୍ଫୁଲିଙ୍ଗ’ରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ ସ୍ଫୁଲିଙ୍ଗ ନିର୍ବାପିତ ପରେ ଶେଷ ଶିଖା ଧରି ଜଳି ଉଠି ନାହିଁ ।

ଓଡ଼ିଆ ସାହିତ୍ୟରେ କୁନ୍ତଳାକୁମାରୀଙ୍କ ନିପୁଣ ତଥା ନିଖୁଣ ଲେଖନୀର ବଳିଷ୍ଠ ନିବେଦନ ସର୍ବଦା ସୁପ୍ରତିଷ୍ଠିତ । ସାହିତ୍ୟରେ ନୂତନ ଦୃଷ୍ଟିକୋଣ,

ବିପ୍ଳବର ବନ୍ୟାରେ, ଅଧଃପତନର ଗହ୍ୱରରୁ, ଦେଶାତ୍ମବୋଧ ଓ ଜାତୀୟତାର ଅଭିବ୍ୟକ୍ତି ପାଇଁ କୁନ୍ତଳାକୁମାରୀ ଜାତିର ନମସ୍ୟା । ଅସାଧାରଣ କବି ପ୍ରତିଭା ତାଙ୍କର ସମସ୍ତ କବିତାରେ ପ୍ରସ୍ଫୁଟିତ । ବଳିଷ୍ଠ ଲେଖନୀ ଚାଳନା କରି ସେ ଅସୁନ୍ଦରକୁ ସୁନ୍ଦର କରିପାରିଛନ୍ତି ଏବଂ ଅତି କ୍ଷୁଦ୍ର, ନଗଣ୍ୟକୁ ତୁଙ୍ଗ ହିମାଳୟ ପରି ଗଢ଼ି ଅଛନ୍ତି ।

ଭାବବିଭୋର ପ୍ରାଣର ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱାସ ହିଁ ଗୀତି-କବିତାର ପ୍ରାଣ ବିନ୍ଦୁ । କୁନ୍ତଳାକୁମାରୀଙ୍କ ଗୀତି-କବିତାରେ ପ୍ରାଣର ଉଚ୍ଛ୍ୱାସ ଓ ଆବେଗ ଦେଖିବାକୁ ମିଳେ । ବ୍ୟକ୍ତିଗତ ଜୀବନର ସୁଖ, ଦୁଃଖ, ବିଷାଦ ଓ ପ୍ରମାଦ ତାଙ୍କର ଅ[illegible]ାଂଶ ଗୀତି-କବିତାରେ ଦେଖାଦେଇଛି । କୁନ୍ତଳାକୁମାରୀଙ୍କ ଗୀତି-କବିତାଗୁଡ଼ିକ ଶ୍ରେଷ୍ଠ ଗୀତି କବିତା । [illegible]ହା ହୃଦୟକୁ ଆଲୋଡ଼ନ କରେ ଏବଂ [illegible]ବନରେ ଉନ୍ମାଦନା ସୃଷ୍ଟି କରେ । ତେଣୁ ଡ଼ଃ କୁଞ୍ଜବିହାରୀ ଦାଶ ଯଥା[illegible] [illegible]ହନ୍ତି—

"ସ୍ଥୂଳ[illegible] [illegible] [illegible] ଉତ୍କଳୀୟମାନଙ୍କ ଅନ୍ତରରେ ଦେଶ, ପ୍ରାଣପ୍ରାଚୁର୍ଯ୍ୟ ଓ କର୍ମ ଜୀବନର ଉନ୍ମାଦନା ସୃଷ୍ଟି କରିବା ଲାଗି ଅଦ୍ୟାପି ସ୍ଥୂଳଙ୍କ ଜ୍ୱଳନ୍ତ ରହିଛି, ମନେହୁଏ ।"



# ଓଡ଼ିଆ ନାଟକର ନୂତନ ଆଭିମୁଖ୍ୟ

ନାଟକ ଜୀବନର ମୂଲ୍ୟାୟନ—ଜୀବନର ପ୍ରକୃତ ସମାଲୋଚନା । ବାସ୍ତବ ଜୀବନର ସୁଖ-ଦୁଃଖ ହସ-କାନ୍ଦକୁ ଅବଲମ୍ବନ କରି ନାଟକ ଗଢ଼ି ଉଠେ । ନାଟକ ଜୀବନର ଘାତପ୍ରତିଘାତମୂଳକ ଘଟଣାକୁ କେନ୍ଦ୍ର କରି ଉତ୍ତେଜନାଜନକ ପରିସ୍ଥିତି ସୃଷ୍ଟି ଦ୍ୱାରା ପରିବେଶ ସଞ୍ଚାର କରି ନିର୍ଦ୍ଦିଷ୍ଟ ପରିଣତି ଆଡ଼କୁ ଦର୍ଶକକୁ ଟାଣି ନେଇଥାଏ । ତେଣୁ ନାଟ୍ୟ ସମାଲୋଚକ ଏଲିଜାବେଥ ଡ୍ରୁ (Elizabeth Drew) ଯଥାର୍ଥରେ କହିଛନ୍ତି, "Drama is the creation and representation of life in terms of theatre" କୌଣସି ଏକ ଜାତିର ଜାତୀୟ ଜୀବନର ବାଣୀ ତାହାର ରଙ୍ଗମଞ୍ଚ ଉପରେ ଯେତିକି ପ୍ରକାଶ ପାଇଥାଏ ଅନ୍ୟ କୌଣସିଠାରେ ଜାତୀୟ ଜୀବନର ଜୀବନ୍ତ ବାସ୍ତବରୂପ ପ୍ରକାଶ ପାଇ ନଥାଏ ।

ନାଟକ ଜୀବନର ଅନୁକରଣ ନୁହେଁ ତାହା ସୃଷ୍ଟି । ଜୀବନର ଅସମ୍ପୂର୍ଣ୍ଣତାକୁ ନାଟକ ସମ୍ପୂର୍ଣ୍ଣ କରି ଗଢ଼ିଥାଏ । ସଂସ୍କୃତ ଆଳଙ୍କାରିକଙ୍କ ମତରେ ନାଟକ ହେଉଛି ଦୃଶ୍ୟକାବ୍ୟ । ଆଚାର୍ଯ୍ୟ ସାଗର ନନ୍ଦୀନଙ୍କ ଭାଷାରେ—"ଅବସ୍ଥାୟା ତୁ ଲୋକସ୍ୟ, ସୁଖଦୁଃଖ ସମୁଦ୍ଭବା । ସତ୍ୟା-ସତ୍ୟାଭିନୟଃ ପ୍ରାଜ୍ଞୋଃ ନାଟ୍ୟମିତ୍ୟ ଭିଧୀୟତେ ।" ଭରତ ମୁନି ବି କହନ୍ତି, "ଯୋୟଂ ସ୍ୱଭାବୋ ଲୋକସ୍ୟ ସୁଖଦୁଃଖ ସମନ୍ୱିତଃ" ଇତ୍ୟାଦି । ଅର୍ଥାତ୍ ଲୋକମାନଙ୍କର ସୁଖଦୁଃଖରୁ ଉତ୍ପନ୍ନ ଅବସ୍ଥାର ଅଭିନୟର ନାମ ନାଟ୍ୟ ବା ନାଟକ । ଏହା ପ୍ରତ୍ୟକ୍ଷ କମ୍ବା କଳ୍ପନା ଓ ସତ୍ୟ ଅସତ୍ୟର ବିଲକ୍ଷଣ ରୂପ ଧାରଣ କରି ସର୍ବସାଧାରଣଙ୍କୁ ଆନନ୍ଦ ଦେଇଥାଏ । ତେଣୁ ସ୍ପଷ୍ଟଭାବେ କୁହାଯାଇପାରେ ଯେ ଜୀବନର ଯଥାସମ୍ଭବ ଅନୁକୃତି ହିଁ ମୀତ୍ ନାଟକର ଧର୍ମ ।

ଯୁଗେ ଯୁଗେ ଏହି ସତ୍ୟତା ପ୍ରମାଣିତ ହୋଇଛି ନାଟକରେ । ଦର୍ଶକର ରୁଚି ଓ ମାନସ ପ୍ରକୃତି ଅନୁଯାୟୀ ନାଟକର ଭାବ ଓ ଆକୃତିର

ପରିବର୍ତ୍ତିତ ହୋଇଥାଏ ଏବଂ ରଙ୍ଗମଞ୍ଚର ରୂପ ଓ ଗତି ଅନୁସାରେ ନାଟକର ରୂପ ଓ ଗତି ନିୟନ୍ତ୍ରିତ ହୋଇଥାଏ । ନାଟ୍ୟକାର ନାଟକରେ ଯେଉଁ ରସ ସୃଷ୍ଟି କରିଥାଏ ସେହି ରସ ପରିବେଷଣ କରେ ଅଭିନେତା ଏବଂ ସେହି ରସ ଆସ୍ୱାଦନ କରେ ଦର୍ଶକ । ସୁତରାଂ ନାଟକର ସାର୍ଥକ ରସ ସୃଷ୍ଟି ଏହି ତିନି ଶ୍ରେଣୀର ଲୋକଙ୍କ ପାରସ୍ପରିକ ସହଯୋଗିତା ଉପରେ ନିର୍ଭର କରେ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶ ସାହିତ୍ୟରେ ପ୍ରଥମେ ଯେଉଁସବୁ ନାଟକ ସୃଷ୍ଟି ହୁଏ ସେହିସବୁ ଜୀବନର ଘାତପ୍ରତିଘାତର ଚିତ୍ର ସହିତ ଐତିହ୍ୟ, ସରମ୍ପରା ଓ ସାମାଜିକ ସମସ୍ୟାକୁ କେନ୍ଦ୍ର କରି ଆତ୍ମପ୍ରକାଶ କରେ । ସଂସ୍କୃତ ନାଟକଗୁଡ଼ିକ ପୌରାଣିକ, ଐତିହାସିକ ଓ ସାମାଜିକ । ଏଥିରେ ଶୃଙ୍ଗାର ରସର ପ୍ରାଚୁର୍ଯ୍ୟ ବିଶେଷଭାବେ ଦେଖା ଦେଇଥିଲେ ବି ଆଦର୍ଶ ଚରିତ୍ର ଚିତ୍ରଣ, ଅଧ୍ୟାତ୍ମିକ ଚେତନା, ଆଦର୍ଶବାଦର ପରିପ୍ରକାଶ ଓ ଆନନ୍ଦଦାନ ସଂସ୍କୃତ ନାଟକର ପ୍ରଧାନ ବୈଶିଷ୍ଟ୍ୟ । ଅଧ୍ୟାପକ ମ୍ୟାକ୍ସମୁଲରଙ୍କ ମତରେ ଭାରତୀୟ ନାଟ୍ୟକଳାର ବିକାଶ ଲୌକିକ ଓ ସାମାଜିକ କ୍ରୀଡ଼ାକଳାପରୁ ହୋଇଛି । ତେଣୁ ତତ୍କାଳୀନ ସାମାଜିକ ଦୃଷ୍ଟିଭଙ୍ଗୀ ଯାହାଥିଲା ତାହା ତତ୍କାଳୀନ ନାଟକରେ ପ୍ରତିଫଳିତ ହେବା ସ୍ୱାଭାବିକ ।

ପାଶ୍ଚାତ୍ୟ ନାଟକ ପ୍ରଥମେ ଜନ୍ମଲାଭ କଲା ଗ୍ରୀକ୍ ସାହିତ୍ୟରେ ଏବଂ ପରେ ପରେ ବିକାଶ ଲାଭକଲା ସମଗ୍ର ୟୁରୋପରେ । ସେଉଁ ନାଟକ ପ୍ରଥମ ଅବସ୍ଥାରେ କେବଳ ଧର୍ମଧାରଣା ନେଇ ଆତ୍ମପ୍ରକାଶ କରିଥିଲା ସେହି ନାଟକ ପରେ ପରେ ଯୁଗାନ୍ତକାରୀ ବୈପ୍ଳବିକ ଚିନ୍ତା ନେଇ ଆତ୍ମପ୍ରକାଶ କଲା ସେକ୍ସପିୟରଙ୍କ ଲେଖନୀରେ । ଘଟଣା ବୈଚିତ୍ର୍ୟ, ଜୀବନର ଘାତପ୍ରତିଘାତର ଜୀବନ୍ତ ଚିତ୍ର, ଅନ୍ତର୍ଦ୍ଵନ୍ଦ, ନାଟ୍ୟୋତ୍କଣ୍ଠା ଓ ସର୍ବୋପରି ରୋମାଣ୍ଟିକ ଚେତନା ସେକ୍ସପିୟରଙ୍କ ନାଟକଗୁଡ଼ିକରେ ଅତି ସୁନ୍ଦରଭାବେ ରୂପାୟିତ । ଜୀବନର ସମସ୍ୟାଗୁଡ଼ିକ ଅତି ନିଖୁଣଭାବେ ପ୍ରକାଶ ପାଇଲା ପ୍ରଥମେ ତାଙ୍କ ନାଟକରେ । କିନ୍ତୁ ସଂସ୍କାରବାଦୀ ବର୍ଣ୍ଣାର୍ଡ ଶ' ସମାଜରେ ବ୍ୟାପିଥିବା କାଳ୍ପନିକ ଆତ୍ମଥିବା ରୀତି, ନୀତି ଓ ଆଇନକାନୁନର ପରିବର୍ତ୍ତନ ଚାହିଁଲେ । ପରେ ପରେ ନାଟକକୁ ବାସ୍ତବାଭିମୁଖୀ କରିବା ପ୍ରଚେଷ୍ଟା ଦେଖା

ହେଲା । ମାନବ ଜୀବନର ଗଭୀର ତଥା ଗୂଢ଼ ରହସ୍ୟର ଚିତ୍ର ଆଜି ନାଟକରେ ଦେଖିବାକୁ ମିଳେ ଏବଂ ସମାଜର ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଆଧୁନିକ ନାଟକ ସଚେତନ । ବର୍ତ୍ତମାନ ବିଭିନ୍ନ ଶ୍ରେଣୀର ନାଟକ ସୃଷ୍ଟି ହୋଇ ନୂତନ ଚିନ୍ତାର ନୂତନ ପ୍ରୟୋଗ ସାହିତ୍ୟରେ ଦେଖିବାକୁ ମିଳେ । ମନସ୍ତାତ୍ତ୍ୱିକ, ପ୍ରତୀକ ଧର୍ମୀ (Symbolic), ଉଦ୍ଭଟ (Absurd drama) ନାଟକ ଓ ରୂପକ ନାଟକ ବହୁଳ ଭାବେ ବିକାଶ ଲାଭ କରିଥିବା ମନେହୁଏ । ଏହିସବୁ ନାଟକ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଉଭୟ ଦେଶ ନାଟ୍ୟ ସାହିତ୍ୟରେ ଅଧିକ ଲୋକପ୍ରିୟ ।

ଓଡ଼ିଆ ଯାତ୍ରା ଓଡ଼ିଆ ନାଟକର ଭିତ୍ତି । ଊନବିଂଶ ଶତାବ୍ଦୀର ଶେଷ ପାଦରେ ଓଡ଼ିଆ ନାଟକ ଜନ୍ମଲାଭ କଲା । ଏତିକିବେଳେ ଯେଉଁସବୁ ନାଟକ ରଚିତ ହେଲା ସେଥିରୁ କେତେକ ଓଡ଼ିଶାର ସାମାଜିକ ଜୀବନ ସହିତ ସମ୍ପର୍କ ରଖିଲା ଆଉ କେତେକ ବିଦେଶୀ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହୋଇ ଘଟଣାବହୁଳ ନାଟକରୂପେ ଆତ୍ମପ୍ରକାଶ କଲା । ଏହି ସମୟରେ ରାମଶଙ୍କର ରାୟ ଯେଉଁସବୁ ନାଟକ ରଚନା କଲେ ସେମାନଙ୍କ ମଧ୍ୟରେ 'କାଞ୍ଚିକାବେରୀ', 'ଯୁଗଧର୍ମ', 'କାଞ୍ଚନମାଳୀ' ଓ 'ବିଷମୋଦକ' ନାଟକ ପ୍ରଣିଧାନଯୋଗ୍ୟ । ଏଥିରେ ଓଡ଼ିଶାର ତତ୍କାଳୀନ ସାମାଜିକ ଓ ରାଜନୈତିକ ଅବସ୍ଥା ପରିସ୍ଫୁଟ । ତାଙ୍କ ନାଟକ ଓଡ଼ିଶାର [illegible] ଯୋଗାଇ ଥିଲା । ଓଡ଼ିଆ ନାଟକର ଉନ୍ମେଷାବସ୍ଥାରେ କାମପାଳ ମିଶ୍ର, [illegible]ଚରଣ ପଟ୍ଟନାୟକ, ପଦ୍ମନାଭ ଦେବ, ରାଧାମୋହନ ରାଜେନ୍ଦ୍ର ଦେବ, [illegible]ସୁନ୍ଦର ଦେବ ଗୋସ୍ୱାମୀ ପ୍ରଭୃତି ପ୍ରତିଷ୍ଠିତ ନାଟ୍ୟକାର ବହୁ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ରଚନା କରିଅଛନ୍ତି । ଏହିସବୁ ନାଟକରେ ନାଟ୍ୟକାର ନାଟକର ମଞ୍ଚ ମୂଲ୍ୟ ଅପେକ୍ଷା ସାହିତ୍ୟିକ ମୂଲ୍ୟ ଉପରେ ବିଶେଷ ଜୋର୍ ଦେଇଥିବା ମନେହୁଏ । ହିନ୍ଦୁଧର୍ମ ଆଦର୍ଶବାଦ ଓ ଜାତୀୟତାର ପରିପ୍ରକ୍ଷିର ସହିତ ତତ୍କାଳୀନ ସମାଜର ସାମାଜିକ ସମସ୍ୟାର ଚିତ୍ର ସେହିସବୁ ନାଟକଗୁଡ଼ିକରେ ଚିତ୍ରିତ ।

ପରେ ପରେ ନାଟ୍ୟଭାରତୀ ଅଶ୍ୱିନୀକୁମାରଙ୍କ ଆବିର୍ଭାବ ହୁଏ ଓଡ଼ିଆ ନାଟ୍ୟ ସାହିତ୍ୟରେ । ସେ ସୃଷ୍ଟି କରନ୍ତି ଏକ ନୂତନ ଅଧ୍ୟାୟ, ନୂତନ ଚିନ୍ତା,

ନୂତନ ଗଠନ ଶୈଳୀ । ପ୍ରଥମଥର ପାଇଁ ବସ୍ତୁତାନ୍ତ୍ରିକ ନାଟକ ଦେଖାଦେଲା ତାଙ୍କରି ହାତରେ । ତାଙ୍କର ଐତିହାସିକ ନାଟକ 'ଶେଓଙ୍ଗ', 'କଳାପାହାଡ଼', 'କୋଣାର୍କ' ଓ ସାମାଜିକ ନାଟକ 'ମାଷ୍ଟରବାବୁ', 'ଶ୍ରୀଲୋକନାଥ', 'ଅଭିନୟ' ପ୍ରଭୃତି ନୂତନ ଅଭିମୁଖ୍ୟ ନେଇ ଆତ୍ମପ୍ରକାଶ କଲା । ସମାଜରେ ସାମ୍ୟ ଓ ନ୍ୟାୟ ପ୍ରତିଷ୍ଠା, ଦେଶାତ୍ମବୋଧର ପରିପ୍ରକାଶ ଓ ନାୟକନାୟିକାର ମାନସିକ ଦ୍ୱନ୍ଦ୍ୱର ଚିତ୍ର ଅତି ସୁନ୍ଦର ଭାବେ ପ୍ରକାଶ ପାଇଛି ତାଙ୍କର ନାଟକଗୁଡ଼ିକରେ ।

ଯୁଗେ ଯୁଗେ ନାଟକଦ୍ୱାରା ସମାଜ ପ୍ରଭାବିତ । ନାଟକର ପରିବେଶ ଜନସାଧାରଣଙ୍କ ଉପରେ ପ୍ରଭାବ ପକାଇବା ସ୍ୱାଭାବିକ । ୧୯୩୯ ଶେଷ ଭାଗରେ କୁଶଳୀ କଳାକାର କବିଚନ୍ଦ୍ର କାଳୀଚରଣ 'ଓଡ଼ିଶା ଥିଏଟର୍ସ' ପ୍ରତିଷ୍ଠା କରି ସ୍ୱକୀୟ ନାଟକ ମଞ୍ଚସ୍ଥ କରିଥିଲେ । ଏହା ତାଙ୍କର ଅକ୍ଲାନ୍ତ ପରିଶ୍ରମ ଓ ନିରବଚ୍ଛିନ୍ନ ସାଧନାର ଫଳ । ତତ୍କାଳୀନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାକୁ ଦୃଷ୍ଟି ସେ ରଚନା କରନ୍ତି ଐତିହାସିକ, ପୌରାଣିକ ଓ ସାମାଜିକ ନାଟକ । ବାସ୍ତବ ଜୀବନର ପ୍ରତିଛବି, ସମାଜକୁ ପ୍ରଭାବିତ କଲାଭଳି ବଳିଷ୍ଠ କାହାଣୀ, ନୂତନ ଶୈଳୀ ନେଇ ତାଙ୍କ ନାଟକଗୁଡ଼ିକର ସୃଷ୍ଟି ହେଲା । ତାଙ୍କ ରଚନା ଓଡ଼ିଆ ନାଟ୍ୟ ସାହିତ୍ୟରେ ଏକ ନୂତନ ଦିଗନ୍ତ । ମଞ୍ଚୋପଯୋଗିତା ତାଙ୍କ ନାଟକର ମୁଖ୍ୟ ଅଭିମୁଖ୍ୟ । ପରବର୍ତ୍ତୀ ବହୁ ନାଟ୍ୟକାରଙ୍କୁ ନୂତନପଥର ପଥିକ ହେବାପାଇଁ ସେସବୁ ନାଟକ ପ୍ରେରଣା ଯୋଗାଇଛି ।

ନାଟ୍ୟକାର କାର୍ତ୍ତିକକୁମାର ଘୋଷ, ରାମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, ଭଞ୍ଜକିଶୋର, ନରସିଂହ ମହାପାତ୍ର, କମଳଲୋଚନ ମହାନ୍ତି, ସୁରେନ୍ ମହାନ୍ତି ପ୍ରଭୃତିଙ୍କ ଆଧୁନିକ ନାଟ୍ୟ ସାହିତ୍ୟକୁ ଯଥେଷ୍ଟ ଅବଦାନ ରହିଛି । ଏମାନେ ପ୍ରତିଷ୍ଠାବାନ୍ କଳାକାର । ଏମାନଙ୍କ ଲେଖନୀରୁ ବହୁ ସାମାଜିକ, ସମସ୍ୟାମୂଳକ ଓ ମନସ୍ତାତ୍ତ୍ୱିକ ନାଟକ ସୃଷ୍ଟି ହୋଇଛି । ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମାଜର ନିଖୁଣ ଚିତ୍ର, ଅର୍ଥନୈତିକ ସମସ୍ୟା, ରାଜନୈତିକ ଅନିଶ୍ଚିତତା, ଶୋଷକ ଓ ଶୋଷିତର ସଂଘର୍ଷ, ଶ୍ରେଣୀହୀନ ସମାଜ ପ୍ରତି ମମତା, ଅବହେଳିତ ପ୍ରତି କରୁଣା, ସାମାଜିକ ନ୍ୟାୟ ପ୍ରତିଷ୍ଠା

ପାଇଁ ବ୍ୟାକୁଳତା, ମାର୍କସୀୟ ଦର୍ଶନ ଏବଂ ବହୁ ଆଦର୍ଶବାଦର ସଙ୍ଘର୍ଷର ଚିତ୍ର ବାସ୍ତବ ଜୀବନର ଅନୁଭୂତି ଦେଇ ପ୍ରକାଶ ପାଇଛି ଏମାନଙ୍କ ନାଟକରେ । ଏମାନଙ୍କର ନାଟକ ବିଶେଷ ଭାବେ ପାଶ୍ଚାତ୍ୟାଭିମୁଖୀ ନୁହେଁ । ସାମ୍ପ୍ରତିକ ସମାଜର ଚଳଚଳନ, ରୀତିନୀତି ନାଟକଗୁଡ଼ିକରେ ପ୍ରତିଫଳିତ ।

ଅତ୍ୟାଧୁନିକ ନାଟକ ଆଧୁନିକ ଜୀବନର ତିକ୍ତତା, ଜଟିଳତା, ଅସ୍ଥିରତା, ଅନ୍ତଃସାରଶୂନ୍ୟତା ପ୍ରତି ସଚେତନ ଥିବା ଜଣାପଡ଼େ । ଆଜିର ଶିଳ୍ପୀ ନୂତନ ସୃଷ୍ଟିର ସନ୍ଧାନୀ, ଯାନ୍ତ୍ରିକ ସଭ୍ୟତାର ପ୍ରଭାବ ଫଳରେ ମାନବିକ ମୂଲ୍ୟବୋଧର ବିପର୍ଯ୍ୟୟ ସତେ ଯେମିତି ଆଜି ସ୍ରଷ୍ଟାଙ୍କୁ ଅଥୟ କରିଛି, ଚିନ୍ତାକୁ ଭାରାକ୍ରାନ୍ତ କରିଦେଇଛି । ତେଣୁ ବାସ୍ତବତାର ନଗ୍ନରୂପ ଦେଖାଦେଇଛି ଆଜିର ନାଟକରେ । ବଞ୍ଚି ରହିବାର ପ୍ରଶ୍ନ ହିଁ ଆଜି ସବୁଠୁ ବଡ଼ ପ୍ରଶ୍ନ । କଠୋର ଆଦର୍ଶବାଦ ଉପରେ ଜୋର ଦିଆନଯାଇ ଦୈନନ୍ଦିନ ଜୀବନର ବାସ୍ତବ ଚିତ୍ର ଦିଆଯାଉଛି ଆଜିର ନାଟକରେ ।

ନାଟ୍ୟକାର ମନୋରଞ୍ଜନ ଦାସ, ବିଜୟକୁମାର ମିଶ୍ର, ବିଶ୍ୱଜିତ୍ ଦାସ ଓ ରମେଶ ପାଣିଗ୍ରାହୀଙ୍କ ଅତ୍ୟାଧୁନିକ ନାଟକରେ ଜୀବନର ବାସ୍ତବଚିତ୍ର ସହିତ ପ୍ରଗତିଶୀଳ ଚିନ୍ତାଧାରା ଓ ବୌଦ୍ଧିକତାର ସ୍ପଷ୍ଟ ସଙ୍କେତ ମିଳେ । ଏହି କଳାକାରମାନଙ୍କ ନୂତନ ସୃଷ୍ଟି 'ଅରଣ୍ୟ ଫସଲ', 'ବନହଂସୀ', 'ଲଗ୍ନ', 'ଶବ ବାହକମାନେ', 'ନାଲିପାନ ରାଣୀ—କଳାପାନ ଟିକା' ଓ 'ମୁଁ, ଆମ୍ଭେ ଓ ଆମ୍ଭେମାନେ' ବିଶେଷ ଭାବେ ପ୍ରଣିଧାନଯୋଗ୍ୟ । ଏଗୁଡ଼ିକ ଅତ୍ୟାଧୁନିକ, ପରୀକ୍ଷାମୂଳକ ଏବଂ ବିଶେଷ ଉପଭୋଗ୍ୟ । ଏହି ନାଟକ-ଗୁଡ଼ିକରେ ଚରିତ୍ରଗୁଡ଼ିକର ଅନ୍ତର୍ମୁଖୀ ଚିତ୍ର, ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ, ପ୍ରବୃତ୍ତିର ବିକାଶ, ବିଜ୍ଞପ୍ତି ଇଙ୍ଗିତଧର୍ମୀ ସଂଳାପ ସଂଯୋଜନା, ପ୍ରତୀକବାଦର ପ୍ରୟୋଗ ଓ ଉଦ୍ଭଟ କଳ୍ପନା ଅତି ଜୀବନ୍ତ ଭାବେ ପ୍ରତିଫଳିତ । ପାରମ୍ପରିକ ନାଟକ-ଗୁଡ଼ିକରେ ଯେଉଁ ଶୃଙ୍ଖଳିତ ଭାବଧାରା ପ୍ରକାଶ ପାଉଥାଏ ଅତ୍ୟାଧୁନିକ ନାଟକରେ ବିଶେଷତଃ (Absurd) ଉଦ୍ଭଟ ନାଟକରେ ସେହି ପାରମ୍ପରିକ ମୂଲ୍ୟବୋଧ ଦେଖିବାକୁ ମିଳେନା । ନାଟ୍ୟକାର ମନୋରଞ୍ଜନଙ୍କ ଭାଷାରେ "ପୂର୍ବର ଆଶା-ବିଶ୍ୱାସ ଧୂଳିରେ ମିଶିଯାଇଛି··· ଆଉ ତା ଜାଗାରେ ସ୍ଥାନ

ପାଇଛି ଜୀବନ ଯନ୍ତ୍ରଣାର କରୁଣ ଆର୍ତ୍ତନାଦ, ଅସ୍ଥିରତା, ହତାଶା, ଆତ୍ମ ପ୍ରବଞ୍ଚନା-ଛଳନା । ଫଳରେ ଏ ପୃଥିବୀ ଆଜିର ମଣିଷ ପାଇଁ ହୋଇଛି ଉତ୍ପାଦକ, ଅସଙ୍ଗତ, ଅଯୌକ୍ତିକ । ଆଜିର ସମାଜରେ ସତ୍ୟ ପ୍ରତିହତ, ନୀତି ବିପର୍ଯ୍ୟସ୍ତ ଏବଂ ନୈତିକତା ସ୍ଖଳିତ । ଏହି ନୂତନ ଚିନ୍ତାଧାରା ନେଇ ଅତ୍ୟାଧୁନିକ ଓଡ଼ିଆ ନାଟକ ପ୍ରଗତି ପଥରେ ଆଗେଇ ଚାଲିଛି । ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ଦେଖା ଦେଇଥିବା ନାଟକ ତୁଳନାରେ ଆମ ନାଟକ ଯଥେଷ୍ଟ ଅଗ୍ରଗତି କରିଥିବା ଜଣାଯାଏ ଏବଂ ଆନ୍ତର୍ଜାତିକ ନାଟ୍ୟ ସାହିତ୍ୟରେ ଦେଖା ଦେଇଥିବା ନୂତନ ଚିନ୍ତା ଓ ପଦ୍ଧତି ସହିତ ସମତାଳରେ ଆଗେଇ ଚାଲିଛି ଆଜିର ଓଡ଼ିଆ ନାଟକ ।



# କ୍ଲାସିକ୍ ଓ ରୋମାଣ୍ଟିକ୍

ସାହିତ୍ୟ ଜଗତରେ କ୍ଲାସିସିଜମ୍ ଓ ରୋମାଣ୍ଟିସିଜମ୍ ଏହି ଦୁଇଟି ଶବ୍ଦର ବହୁଳ ବ୍ୟବହାର ଦେଖିବାକୁ ମିଳେ । ଏହି ଦୁଇଟି ପରସ୍ପର ବିପରୀତଧର୍ମୀ ପରି ଦେଖାଯାଉଥିଲେ ବି ଏହା ସମ୍ପୂର୍ଣ୍ଣ ବିପରୀତଧର୍ମୀ ନୁହେଁ; ବରଂ ଗୋଟିଏ ଅନ୍ୟଟିର ପରିପୂରକ । ସୁସ୍ଥ ଓ ସ୍ୱାଭାବିକ ମଣିଷର ଅନ୍ତରରେ ଯେପରି କଳ୍ପନା ଓ ବୁଦ୍ଧିବୃତ୍ତିର ସମନ୍ୱୟ ଦେଖିବାକୁ ମିଳିଥାଏ, ସେହିପରି କାବ୍ୟ-କବିତାରେ ଏହି ଦ୍ୱିବିଧ ମାନସଭଙ୍ଗୀ କଳ୍ପନା ଓ ବୁଦ୍ଧିବୃତ୍ତି ଲକ୍ଷ୍ୟ କରାଯାଇଥାଏ । ଏହି ଦୁଇଟି ମାନବ ମନର ଚିରନ୍ତନ ଲକ୍ଷଣ—ଗୋଟିକ ବିନା ଅନ୍ୟଟି ଅର୍ଥହୀନ । ସାହିତ୍ୟ ଜଗତରେ ବି କଳ୍ପନା-ପ୍ରବଣତା ଓ ସଂଯମ—ଏହି ଦୁଇଟିର ଆବଶ୍ୟକତା ବେଶି । ତେଣୁ କ୍ଲାସିକ୍ ଓ ରୋମାଣ୍ଟିକ ଏ ଉଭୟର ପ୍ରୟୋଜନ ସାହିତ୍ୟରେ ଦେଖିବାକୁ ମିଳେ ।

**କ୍ଲାସିକ୍**—କ୍ଲାସିକ୍ ଶିଳ୍ପୀ ଚିରନ୍ତନ ଓ ଶାଶ୍ୱତ ସାହିତ୍ୟର ସ୍ରଷ୍ଟା । ସେ ମଣିଷର ମନକୁ ଐଶ୍ୱର୍ଯ୍ୟଶାଳୀ କରି ତାର ମାନସିକ ଅଗ୍ରଗତିରେ ସାହାଯ୍ୟ କରିଥାନ୍ତି । ପରିମିତିବୋଧହିଁ କ୍ଲାସିକ୍‌ର ପ୍ରାଣଧର୍ମ । 'କ୍ଲାସିକ୍' ଦୃଷ୍ଟିଭଙ୍ଗୀର ବୈଶିଷ୍ଟ୍ୟ ହେଉଛି ସାହିତ୍ୟ, ସମାଜ ଓ ମଣିଷ ଏକ ସୁକଠୋର ନିୟମ ବନ୍ଧନରେ ଆବଦ୍ଧ । କ୍ଲାସିକ୍ ଶିଳ୍ପୀର ଦୃଢ଼ବିଶ୍ୱାସ ମଣିଷର ଆବେଗ ଓ ଆକାଂକ୍ଷା ଅଛି ସତ, କିନ୍ତୁ ତାର ଏହିଭଳି କ୍ଷମତା ବି ଅଛି ଯାହାର ବଳରେ ସେହି ଆବେଗ ଓ ଆକାଂକ୍ଷାକୁ ସଂଯତ କରି ସେ ରଖିଥାଏ, ଏବଂ ଏହା ହିଁ ତାହା ପକ୍ଷେ ପ୍ରକୃତ ମନୁଷ୍ୟତ୍ୱ । ଏହି ମନୁଷ୍ୟତ୍ୱ ପ୍ରତି ଅନୁରାଗ ହିଁ କ୍ଲାସିକ୍‌ର ଆଦର୍ଶ । ପ୍ରଥମେ ଗ୍ରୀକ୍ ସାହିତ୍ୟରେ 'କ୍ଲାସିକ୍' ଅତି ଲୋକପ୍ରିୟ ହୋଇପାରିଥିଲା । ଏରିଷ୍ଟୋଟେଲ ଗ୍ରୀକ୍ 'କ୍ଲାସିକ୍'ରେ ପରିମିତିବୋଧ ଦେଖିପାରିଥିଲେ । ଏଥିରେ କଳ୍ପନାର ଅସଙ୍ଗତି ଦୃଷ୍ଟିଗୋଚର ହୁଏ ନାହିଁ ।

କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ଏହି କ୍ଲାସିକ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଆସ୍ତେ ଆସ୍ତେ ଦେଖାଦେଲା । ଗ୍ରୀକ୍ କ୍ଲାସିକବାଦ ମଣିଷରେ ଉତ୍କର୍ଷ ଅନୁଶୀଳନ ଉପରେ ପ୍ରତିଷ୍ଠିତ ଥିଲା ଏବଂ ଜ୍ଞାନ ଓ କର୍ମର ସାଧନା କ୍ଲାସିକବାଦର ମୂଳମନ୍ତ୍ର ଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ କ୍ଲାସିକବାଦର ଆଦର୍ଶ ହେଲା ଯୁକ୍ତିବାଦ ଏବଂ ଜୀବନର ନୂତନ ରୁଚିବୋଧ । ଲେଖକଙ୍କ ରୁଚି ନିର୍ମଳତା, ଶବ୍ଦ ସଂଯମ, ଚିନ୍ତା ଓ ଶୈଳୀର ଅପୂର୍ବ ସମନ୍ୱୟ ପ୍ରତି କ୍ଲାସିକବାଦ ବିଶେଷ ଧ୍ୟାନ ଦେଲେ ।

T. S. Elliotଙ୍କ ମତରେ ପରିପକ୍ୱ ମନରୁ କ୍ଲାସିକର ସୃଷ୍ଟି । ତେଣୁ ସେ କହନ୍ତି —

> 'A classic can only occur when a civilisation is mature, when language and literature are mature and it must be the work of a mature mind.'

'କ୍ଲାସିକ୍' ସମ୍ପର୍କରେ ଆଲୋଚନା କରିବାକୁ ଯାଇ R. A. Scott-James ତାଙ୍କର 'The making of literature' ବହିରେ ଉଲ୍ଲେଖ କରିଛନ୍ତି —

> "Form, outward form, is the first distinctive element in classism, and on this beauty of outward appearance, with its attribute of symmetry, balance, order, proportion, reserve, it takes its stand."

ତେବେ ଏତିକି କୁହାଯାଇପାରେ କ୍ଲାସିକ୍ ରଚନା ପାଇଁ ପ୍ରାଚୀନ ସଭ୍ୟତା, ପୋଖତ ଭାଷା ଓ ପ୍ରବୀଣ ମନର ଯେତିକି ଆବଶ୍ୟକତା ରହିଛି ନୀତି-ନିୟମ-ନିଷ୍ଠା, ଔଚିତ୍ୟବୋଧ ଓ ଅଭିବ୍ୟକ୍ତି ବୈଶିଷ୍ଟ୍ୟର ସେତିକି ଆବଶ୍ୟକତା ରହିଛି । ଏହି ଦୃଷ୍ଟିରୁ କ୍ଲାସିକ୍‌ର ସୁସ୍ଥ ପରଂପରା ପ୍ରତି ଦୃଷ୍ଟି ଦେଇ ବିଖ୍ୟାତ ସମାଲୋଚକ (Goathe) ଗେଟେ କହନ୍ତି —

> 'We may call the classic healthy, the Romantic diseased.' ସାହିତ୍ୟିକ Peterଙ୍କ ମତରେ, "Order in beauty is classical, the addition of strangeness to beauty is romantic."

ଏହିଭଳି ବିଭିନ୍ନ ସମାଲୋଚକଙ୍କ କ୍ଲାସିକ ସମ୍ପର୍କରେ ବିଭିନ୍ନ ମତବାଦ ରହିଛି । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦ ଓ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏହି 'କ୍ଲାସିକ୍' ଆଦର୍ଶବାଦ ବିରୁଦ୍ଧରେ ଏକ ନୂତନ ଆନ୍ଦୋଳନର ସୂତ୍ରପାତ ହେଲା ସାହିତ୍ୟ ଜଗତରେ । ଏହି ନୂତନ ଆନ୍ଦୋଳନ 'ରୋମାଣ୍ଟିକ୍ ଆନ୍ଦୋଳନ' ନାମରେ ନାମିତ । ଏତିକବେଳେ ରୋମାଣ୍ଟିକ୍ ବିପ୍ଳବୀ ଅନୁଭବ କଲେ ଯେ କ୍ଲାସିକ୍ ଶିଳ୍ପୀର ସାହିତ୍ୟ ହୃଦୟକୁ ଆଲୋଡ଼ନ କରେ ନାହିଁ ବରଂ ମସ୍ତିଷ୍କକୁ ସେ ଆଘାତ ଦିଏ । ବୁଦ୍ଧି, ବିଚାର ଓ ମସ୍ତିଷ୍କଦ୍ୱାରା ସେହି ସାହିତ୍ୟର ରସ ଆସ୍ୱାଦନ କରାଯାଇଥାଏ । ତେଣୁ ଯାହା ହୃଦୟକୁ ଆଲୋଡ଼ନ କରେ ନାହିଁ, ପ୍ରାଣକୁ ପୁଲକିତ କରେ ନାହିଁ, ରୋମାଞ୍ଚ ସୃଷ୍ଟି କରେ ନାହିଁ ତାହାହେଲେ ସେହି ସାହିତ୍ୟ ଜୀବନଠାରୁ ଦୂରେଇ ଯିବା ସ୍ୱାଭାବିକ । ଏହି ଦୃଷ୍ଟିରୁ ନୂତନ ଉଦ୍ଦୀପନା, ନୂତନ ଚିନ୍ତା ଓ ବୈପ୍ଳବିକ ଚେତନା ନେଇ ସାହିତ୍ୟର ନୂତନ ଆଭିମୁଖ୍ୟ ସୃଷ୍ଟି ପାଇଁ ରୋମାଣ୍ଟିକ ସ୍ରଷ୍ଟା ଆଗଭର ହେଲେ ।

ଏହି ରୋମାଣ୍ଟିକ୍ ବିପ୍ଳବ ଯେଉଁ ନୂତନ ଭାବ-ଦୃଷ୍ଟିକୁ ଜନ୍ମ ଦେଲା ତାହାର ମୂଳଉତ୍ସ ହେଲା ରୁଷୋଙ୍କର ବିଦ୍ରୋହମୂଳକ ନୂତନ ଜୀବନ-ଦର୍ଶନ ଏବଂ ଜର୍ମାନର ବିଶିଷ୍ଟ ଦାର୍ଶନିକ କ୍ୟାଣ୍ଟ ଓ ହେଗେଲ୍‌ଙ୍କ ନୂତନ ଆଦର୍ଶବାଦ । ମଣିଷ ଜୀବନର ମର୍ଯ୍ୟାଦାବୋଧ, ବ୍ୟକ୍ତି-ସ୍ୱାତନ୍ତ୍ର୍ୟ, ପ୍ରକୃତି ସହିତ ମାନବ ମନର ନିଗୂଢ଼ ସମ୍ପର୍କ ଓ ପ୍ରେମର ଅପରିମାପ୍ୟ ଶକ୍ତି ସମ୍ବନ୍ଧରେ ମନୀଷୀ ରୁଷୋ ତତ୍କାଳୀନ ସମାଜକୁ ସଚେତନ କରିଥିଲେ । ଅନ୍ୟ ଦିଗରେ ଜର୍ମାନର ଦର୍ଶନଶାସ୍ତ୍ର ବିଶେଷତଃ ବ୍ୟକ୍ତି-ସ୍ୱାତନ୍ତ୍ର୍ୟବାଦ ସମାଜରେ ଆଲୋଡ଼ନ ସୃଷ୍ଟି କରିଥିଲା । କ୍ୟାଣ୍ଟ ପ୍ରଥମେ ବସ୍ତୁ ଜଗତରେ ଈଶ୍ୱର ସୌନ୍ଦର୍ଯ୍ୟାନୁଭୂତିକ ଉପଲବ୍ଧି କରିଥିଲେ ଏବଂ ଚିତ୍ତ (Mind) ଓ ଜଡ଼ (Matter)ର ଅଭେଦ ସମ୍ପର୍କରେ କ୍ୟାଣ୍ଟ ଏକ ନୂତନ ତତ୍ତ୍ୱ ପ୍ରଚାର କରି ରୋମାଣ୍ଟିକ୍ ଭାବ-କଳ୍ପନାକୁ ପଲ୍ଲବିତ କରିଥିଲେ । ରୋମାଣ୍ଟିକ୍ ବିପ୍ଳବର ଅନ୍ୟତମ କାରଣ ହେଲା ଫରାସୀ ବିପ୍ଳବର ଅନୁପ୍ରେରଣା । ଫରାସୀ ବିପ୍ଳବ ଫଳରେ ବିଶ୍ୱବକ୍ଷରେ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ବାଣୀ ପ୍ରଚାରିତ ହୋଇ ମଣିଷର ଭାବ-ଜଗତରେ ଏକ ନୂତନ ବିପ୍ଳବ ସୃଷ୍ଟି କଲା । ଏହିସବୁ କାରଣ ଯୋଗୁଁ ରୋମାଣ୍ଟିକ୍ ଯୁଗ ସମ୍ଭବପର

ହେଲା, ଏବଂ ଏହି ଯୁଗର ମନୀଷ ଆଖିରେ ସମଗ୍ର ବିଶ୍ୱ ଏକ ଅଭିନବ ରୂପରେ ଦେଖାଦେଲା । ଏହି ରୋମାଣ୍ଟିକ୍ ବିଦ୍ରୋହ ଯେତେବେଳେ ବିଶ୍ୱ-ସାହିତ୍ୟକର ଭାବ ଓ କଳ୍ପନାକୁ ବଦଳାଇ ଦେଇ ଏକ ନୂତନ ଚିନ୍ତା ଜଗତକୁ ଆମକୁ ଟାଣି ନେଇଛି, ତେବେ ସେହି ରୋମାଣ୍ଟିକ ବିପ୍ଳବର ବୈଶିଷ୍ଟ୍ୟ କଣ ?

**ରୋମାଣ୍ଟିକ୍**—Wattsଙ୍କ ମତରେ ବିସ୍ମୟ-ରସର ପୁନର୍ଜୀବନ ବା Renaissance of wonder ହେଉଛି ରୋମାଣ୍ଟିକ ଭାବ-କଳ୍ପନାର ବିଶେଷତ୍ୱ । Peter କହନ୍ତି ରୋମାଣ୍ଟିକ୍ ଅର୍ଥ ସୁନ୍ଦର ସହିତ ଅଦ୍ଭୁତର ସମ୍ମିଶ୍ରଣ (Addition of strangeness to beauty) । ରୋମାଣ୍ଟିକ୍ ମାନେ ସାହିତ୍ୟରେ ଉଦାରପ୍ରାଣତା—ଏହି କଥା ଉପଲବ୍ଧି କଲେ Victor Hugo । ଅନ୍ୟ କେତେକଙ୍କ ମତରେ ରୋମାଣ୍ଟିକ୍ ଚେତନା ଅନ୍ୟ କିଛି ନୁହଁ କେବଳ ପ୍ରକୃତିର ରୂପମାଧୁର୍ଯ୍ୟାନୁଭୂତି (Return to nature) । ଏହି ରୋମାଣ୍ଟିକ୍ ବିପ୍ଳବ ଇନ୍ଦ୍ରିୟାନୁଭୂତିକୁ ସ୍ୱୀକାର କରିବା ହେତୁ କେହି କେହି ସମାଲୋଚକ ରୋମାଣ୍ଟିକ୍‌ର ସଂଜ୍ଞା ନିରୂପଣ କରିବାକୁ ଯାଇ କହନ୍ତି ଏହା 'The recognition of sensibility' । 'An extraordinary development of imaginative sensibility' ଅର୍ଥାତ୍ କଳ୍ପନା ପ୍ରବଣତାର ଅସାଧାରଣ ବିକାଶ ହିଁ ରୋମାଣ୍ଟିକ୍ କବିତାର ଲକ୍ଷଣ । ଏହି ମତବାଦ ସର୍ବବାଦୀସମ୍ମତ । ବାସ୍ତବିକ ବିଶ୍ୱର ଯାବତୀୟ ବସ୍ତୁ ସତ୍ତାକୁ ଉଦାର ଅନୁଭୂତିଦ୍ୱାରା ଗ୍ରହଣ କରିବାକୁ ହେଲେ କଳ୍ପନା ନିତାନ୍ତ ପ୍ରୟୋଜନ । କଳ୍ପନାଦ୍ୱାରା ହିଁ କବି ପ୍ରକୃତିର ରୂପ-ରସ ଆସ୍ୱାଦନ କରିଥାଏ । ରୋମାଣ୍ଟିସିଜମ୍ (Romanticism) ଅନ୍ତରର ସୌନ୍ଦର୍ଯ୍ୟ ଉଦ୍‌ଘାଟନ କରି ଅନ୍ତର୍ନିହିତ ସତ୍ୟକୁ ସମଗ୍ର ଭାବେ ପ୍ରକାଶ କରିଥାଏ ।

ରୋମାଣ୍ଟିକ୍ ବିପ୍ଳବର ଅଗ୍ରଦୂତ Wordsworth କଳ୍ପନାବଳରେ ସାଧାରଣ ବସ୍ତୁକୁ ଅସାଧାରଣ ଗୌରବ ମହିମା ଦାନ କରିଅଛନ୍ତି । Coleridge ଅତିପ୍ରାକୃତ ପରିବେଶକୁ ସ୍ୱାଭାବିକ ପରିବେଶରେ ପରିଣତ କରିପାରିଛନ୍ତି, Shelly ଅନାଗତ ଜଗତର କଳ୍ପନାରେ ବିମୁଗ୍ଧ, Keats ଜଗତର ମଧୁ ଆହରଣ କରି 'Beauty is truth and truth is

beauty' ଏହି ବାଣୀ ପ୍ରଚାର କରିଛନ୍ତି ଏବଂ D. H. Lawrence ଆତ୍ମାର ଇନ୍ଦ୍ରିୟାନୁଭୂତି ମଧ୍ୟରେ ସତ୍ୟର ସନ୍ଧାନ ପାଇଛନ୍ତି । ରୋମାଣ୍ଟିକ୍-ବାଦୀ ବାସ୍ତବ ଜଗତର କୋଳାହଳମୟ, ଜଞ୍ଜାଳମୟ ଦୈନନ୍ଦିନ ଜୀବନ ନିକଟରେ ଯେଉଁ ସାହିତ୍ୟ ଜଗତକୁ ଦେଖୁଅଛୁ ସେହି ଉଭୟ ଜଗତ ମଧ୍ୟରେ ଅନ୍ୟ ଏକ ରୋମାଣ୍ଟିକ୍ ଜଗତର ସନ୍ଧାନ ପାଇଅଛୁ । ସେ ଆମ୍ଭମାନଙ୍କୁ ଏହି ବାସ୍ତବ ଜଗତର ନାନା ଦୁଃଖ, ଯନ୍ତ୍ରଣା ଓ ନୈରାଶ୍ୟ ଭିତରୁ ଏକ ଅଜ୍ଞାତ, କୁହେଳିକାଚ୍ଛନ୍ନ ଆନନ୍ଦମୟ କଳ୍ପଲୋକକୁ ଟାଣି ନେଇଥାଏ ଏବଂ ସେଇଠି ଆମେ କଳ୍ପନାର ମାଧୁର୍ଯ୍ୟ ଉପଭୋଗ କରି ଚିରନ୍ତନ ଆନନ୍ଦ ଉପଲବ୍ଧି କରିଥାଉ ।

କଳ୍ପନା ଓ ବୁଦ୍ଧିବୃତ୍ତି ଦୃଷ୍ଟିରୁ କ୍ଲାସିକ୍ ଓ ରୋମାଣ୍ଟିକ୍ ଉଭୟର ଆବଶ୍ୟକତା ସାହିତ୍ୟ ଜଗତରେ ରହିଅଛି । ରୋମାଣ୍ଟିକ୍ କଳ୍ପନା ମାନବ ଚିତ୍ତକୁ ଆନ୍ଦୋଳିତ, ଉଲ୍ଲସିତ ଓ ସଚଳ କରେ; କ୍ଲାସିକ୍ କଳ୍ପନା ଚିତ୍ତକୁ ସଂଯତ ଓ ସଂହତ କରେ । କଳ୍ପନା ପ୍ରବଣତା ହେତୁ ରୋମାଣ୍ଟିକ୍ ଅଶାନ୍ତ, ବିଦ୍ରୋହୀ କିନ୍ତୁ କ୍ଲାସିକ୍ ଶାନ୍ତ, ସମାହିତ ସାଧନାର ପକ୍ଷପାତୀ । କ୍ଲାସିକ୍‌ବାଦ ମୂଳରେ ଅଛି ମିତ-ସଂଯମ-ନିଷ୍ଠା, ଯୋଗ୍ୟତା, ସଂଯମ ଓ ପ୍ରଶାନ୍ତି । କିନ୍ତୁ ରୋମାଣ୍ଟିକ୍‌ବାଦ ମୂଳରେ ଅଛି ଉତ୍ତେଜନା, ଉନ୍ମାଦନା ଓ ପ୍ରାଣପ୍ରାଚୁର୍ଯ୍ୟ । କ୍ଲାସିକ୍ ଓ ରୋମାଣ୍ଟିକ୍ ଉଭୟ ମତବାଦର ମୂଳତତ୍ତ୍ୱ ବିଶ୍ୱସାହିତ୍ୟକୁ ପ୍ରଭାବିତ କରିଛି । କିନ୍ତୁ ଆଧୁନିକ ସାହିତ୍ୟରେ ବିଶେଷ ପ୍ରଭାବ ପଡ଼ିଛି Romanticismର କଳ୍ପନାବୋଧ । ଆଧୁନିକ ଓଡ଼ିଆ ସାହିତ୍ୟରେ ରାଧାନାଥ ଯୁଗରୁ କ୍ଲାସିକ୍ କଳ୍ପନା ଓ ରୋମାଣ୍ଟିକ୍ କଳ୍ପନା ସାହିତ୍ୟରେ ଦେଖାଦେଇଥିଲେ ବି ରୋମାଣ୍ଟିକ୍ କଳ୍ପନା ବିଶେଷ ପ୍ରାଧାନ୍ୟ ଲାଭ କରିଥିବା ମନେ ହୁଏ । ଯୁଗସ୍ରଷ୍ଟା ରାଧାନାଥ କ୍ଲାସିକ୍ ରଚନାର ବିଭିନ୍ନ ଉପାଦାନ ନେଇ 'ମହାଯାତ୍ରା' ମହାକାବ୍ୟ ସୃଷ୍ଟି କରିଛନ୍ତି ସତ; କିନ୍ତୁ ତାଙ୍କର ଅନ୍ୟାନ୍ୟ କାବ୍ୟ-କବିତା ରୋମାଣ୍ଟିକ୍ କଳ୍ପନାର ଭାବ-ଧାରାରେ ପରିପୁଷ୍ଟ । ପରେ ପରେ ଯେଉଁ କାବ୍ୟ-କବିତା ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରିଛି ପ୍ରାୟ ସମସ୍ତ କାବ୍ୟ-କବିତା ଏହି ରୋମାଣ୍ଟିକ୍ ଚିନ୍ତାଧାରା ନେଇ କଳେବର ଲାଭ କରିଅଛି ।

# ପ୍ରତୀକବାଦ

'A movement in French Poetry began about 1880; its matter was impressions, intutions and sensations.'

[ 'Symbolism' – Dictionary of World Literature
By Shipley. ]

କବି ବା ଲେଖକର ଦୈନନ୍ଦିନ ଜୀବନରେ ମନରେ ନାନାଭାବ ଆନ୍ଦୋଳିତ କରେ । କବି ନିଜର ଉପଲବ୍ଧି ଯୁକ୍ତି, ତର୍କଦ୍ୱାରା ପ୍ରକାଶ ନକରି ବୋଧଶକ୍ତି (Intution) ଦ୍ୱାରା ଉପଲବ୍ଧ ସତ୍ୟକୁ ପ୍ରକାଶ କରେ ଏବଂ ବେଳେବେଳେ ସହଜ, ସରଳ ସଙ୍କେତଦ୍ୱାରା ନାନାଭାବର ପ୍ରକାଶ କରିଥାଏ । କବିର ରସାପ୍ଲୁତ ମନ ପ୍ରତୀକର ଆଶ୍ରୟ ଗ୍ରହଣ କରେ । ତେଣୁ ଯଥାର୍ଥରେ କୁହାଯାଇଥାଏ 'ପ୍ରତୀକ' ହିଁ ମନର ଭାବପ୍ରକାଶର ବାହନ । ଏଣୁ ପ୍ରତୀକ ବା Symbolର ପ୍ରୟୋଗ ଆଜି ବିଭିନ୍ନ ଦେଶର କାବ୍ୟ, କବିତା, ଉପନ୍ୟାସ, ନାଟକ ଓ କ୍ଷୁଦ୍ରଗଳ୍ପରେ ବହୁଳଭାବେ ଦେଖିବାକୁ ମିଳେ । ପ୍ରତୀକବାଦ (Symbolism) ଆଜି ଅତି ଜନପ୍ରିୟ ଏବଂ ଏହା ପାଠକର ବୌଦ୍ଧିକ ଚିନ୍ତାର ବିକାଶ ଦିଗରେ ଯଥେଷ୍ଟ ସହାୟକ ।

'ପ୍ରତୀକବାଦ' ସପକ୍ଷରେ ଏକ ନୂତନ ଆନ୍ଦୋଳନ ପ୍ରଥମେ ୧୮୮୦ ମସିହାରେ ଫ୍ରାନ୍ସ ସାହିତ୍ୟକ୍ଷେତ୍ରରେ ଦେଖାଦେଇ ସମଗ୍ର ପାଶ୍ଚାତ୍ୟ ସାହିତ୍ୟ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ପାଶ୍ଚାତ୍ୟ ଦେଶର ବହୁ କବି, ଔପନ୍ୟାସିକ ଓ ନାଟ୍ୟକାର ସ୍ୱରଚିତ କାବ୍ୟ, ଉପନ୍ୟାସ ଓ ନାଟକରେ ପ୍ରତୀକର ପ୍ରୟୋଗ କରିଛନ୍ତି । କିନ୍ତୁ ପ୍ରାଚ୍ୟ ଜଗତରେ ବିଶେଷରୁ ସାହିତ୍ୟରେ ଏହି ପ୍ରତୀକବାଦର ସୂଚନା ବହୁ ଆଗରୁ ଦେଖାଦେଇଛି । ସଂସ୍କୃତ ତଥା

ବହିର୍ଭ ପ୍ରାନ୍ତୀୟ ଭାଷାର କାବ୍ୟ-କବିତାରେ ପ୍ରତୀକର ପ୍ରୟୋଗ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗରୁ ଯେଉଁ ଆଧିଭୌତିକ (Metaphysical) ଚିନ୍ତାକୁ ନେଇ ଜ୍ଞାନ, ଭକ୍ତିମୂଳକ ସାହିତ୍ୟର ସୃଷ୍ଟି ହୋଇଛି ସେଥିରେ ବହୁଳଭାବେ ପ୍ରତୀକର ପ୍ରୟୋଗ ଦେଖାଦେଇଛି । ତେଣୁ ପଞ୍ଚସଖା ଯୁଗର କବି ଯଥାର୍ଥରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ବୁଝାଇବାକୁ ଯାଇ ଆନନ୍ଦ ମନରେ ଗାଇଛି—

'ଓଲଟି କଦମ୍ବମୂଳେ ଲୋଟନ୍ତି ଲୋଟଣି ପାରି,
ଅଠାକାଠି ପଞ୍ଜୁରିରେ ନନ୍ଦାଏ ଧରି ।'

ଯୁଗେ ଯୁଗେ କବି ସ୍ରଷ୍ଟାର ଅପୂର୍ବ ମଧୁମୟ ସୃଷ୍ଟିରେ ଯାହା ଦେଖେ ଏବଂ ଯାହା ଅନୁଭବ କରେ ତାକୁ ଭାଷାରେ ପ୍ରକାଶ କରି ସହୃଦୟ ପାଠକର ମନରେ ରସ ସଞ୍ଚାର କରିଥାଏ । ଏହି ଦୃଷ୍ଟବସ୍ତୁ ଏବଂ ଉପଲବ୍ଧି କବି ମନରେ ନାନାଭାବ ସୃଷ୍ଟି କରେ । ତେଣୁ ଏହି ଭାବଗୁଡ଼ିକୁ କବି ଦୃଷ୍ଟ ବସ୍ତୁର ଅନୁରୂପ ବିଷୟଦ୍ୱାରା ପ୍ରକାଶ କରିଥାଏ । ପୂର୍ଣ୍ଣିମାର ଚନ୍ଦ୍ରମୁଖ ଦେଖି କୌଣସି କବି ପ୍ରିୟାର ମୁଖ ସହିତ ତୁଳନା କଲାବେଳେ ଅନ୍ୟ କୌଣସି କବି ହୁଏତ ସଦ୍ୟ ସେକା ପାଉଁରୁଟି ସହିତ ତୁଳନା କରିଥାନ୍ତି । ଏହିପରି ବସ୍ତୁଗତ କିମ୍ବା ଗୁଣଗତ ସାଦୃଶ୍ୟମୂଳକ ଉପମା ସାହାଯ୍ୟରେ କବି ଯେତେବେଳେ ମନର ଭାବପ୍ରକାଶ କରିଥାଏ ସେତେବେଳେ ସମସ୍ତ ପାଠକର ତାହା ବୋଧଗମ୍ୟ ହୋଇଥାଏ । କିନ୍ତୁ କବି ଯେଉଁଠି ଭାବମୂଳକ ସାଦୃଶ୍ୟଦ୍ୱାରା ମନର ଆବେଗକୁ ପାଠକ ମନରେ ସଞ୍ଚାରିତ କରିବା ପାଇଁ ଚେଷ୍ଟା କରିଥାଏ ସେଇଠି ସ୍ଥଳବିଶେଷରେ ପାଠକ ତାହାକୁ ସହଜରେ ଧରିପାରେ ନାହିଁ । ପାଠକ ଦୃଷ୍ଟିରେ ତାହା କ୍ଲିଷ୍ଟ ଓ ଦୁର୍ବୋଧ ବୋଧହୁଏ । ତେଣୁ ଆଧୁନିକ କାବ୍ୟ, କବିତା, ଉପନ୍ୟାସ ଓ ନାଟକ ବିରୁଦ୍ଧରେ ଏହି ଅଭିଯୋଗ ଶୁଣିବାକୁ ମିଳେ । କିନ୍ତୁ ଏ ଦୁର୍ବୋଧତାର କିଛି ନୂତନତ୍ୱ ନାହିଁ । ସବୁ ସମୟରେ ସମସ୍ତ ପାଠକ ଯେ କବିର ଅନ୍ତରର ଆବେଗ ଓ ଭାବକୁ ସମ୍ପୂର୍ଣ୍ଣଭାବେ ଉପଲବ୍ଧି କରିପାରିବେ ଏହା ଆଦୌ ସମ୍ଭବପର ନୁହେଁ । କାରଣ କବି ବା ଔପନ୍ୟାସିକ ସାମ୍ପ୍ରତିକ ରାଜନୈତିକ, ବୈଜ୍ଞାନିକ ଓ ସାମାଜିକ ପରିବେଶ ଭିତରେ ଗତିକରି ଯାହା ଦେଖନ୍ତି ଏବଂ ଅନୁଭବ

କରନ୍ତି । ସେହି ଦୃଷ୍ଟବସ୍ତୁ ଓ ଘଟଣାର ସାଦୃଶ୍ୟ ଭାବକୁ ଆମ ମନରେ ପ୍ରକାଶ କରିବା ପାଇଁ ଏକ ଅନୁରୂପ ଅଦୃଶ୍ୟ ବସ୍ତୁର ଆଶ୍ରୟ ନେଇଥାନ୍ତି ଏବଂ ଏମିତି କେତେଗୁଡ଼ିଏ ଭାବ ବା ବିଷୟ ଅଛି ସେଗୁଡ଼ିକ ଅତି ସାଧାରଣ ଭାବେ ବର୍ଣ୍ଣିତ ହେଲେ ପାଠକର ସେଥିପ୍ରତି ଦୃଷ୍ଟି ପଡ଼ି ନଥାଏ । ଫଳରେ କବିର ଉପଲବ୍ଧି ପାଠକ ସହଜରେ ଗ୍ରହଣ କରିପାରେ ନାହିଁ । ତେଣୁ ତାକୁ ଯଦି ସଙ୍କେତ ମାଧ୍ୟମରେ ପରିବେଷଣ କରାଯାଏ ତେବେ ପାଠକ ଅତି ସହଜରେ ଭାବ ଆସ୍ୱାଦନ କରିପାରେ । ଏହି ଦୃଷ୍ଟିରୁ ପ୍ରତୀକର ଆଶ୍ରୟ ନିଏ କବି ବା ଔପନ୍ୟାସିକ । ପ୍ରତୀକର କୌଣସି ବାଚ୍ୟ ଅର୍ଥ ନଥାଏ । ସେ କେବଳ Suggest କରେ କିମ୍ବା ଇଙ୍ଗିତ ଦିଏ । ଭାବର ଆଲୋକକୁ ଉଚ୍ଛ୍ୱସିତ କରେ ଏବଂ ଅଦୃଶ୍ୟ ବସ୍ତୁକୁ ଦୃଶ୍ୟ କରିବାରେ ଏକମାତ୍ର ଉପାୟ ରୂପେ ପ୍ରତୀକ ପ୍ରୟୋଗ କରାଯାଇଥାଏ ।

ସ୍ରଷ୍ଟାର ଆନନ୍ଦମୟ ସୃଷ୍ଟିର ରୂପ, ରସ, ଗନ୍ଧ ଭାବପ୍ରବଣ କବି ବା ଶିଳ୍ପୀର ମନକୁ ସର୍ବଦା ଆନ୍ଦୋଳିତ କରେ । ସେ ଅନୁଭବ କରେ, ଏହି ଜଗତ ଏବଂ ତାହାର ବିଚିତ୍ର ରୂପସମ୍ଭାର ସେହି ଆନନ୍ଦମୟ ମହାପୁରୁଷଙ୍କ ଇଙ୍ଗିତ ବହନ କରି ଶିଳ୍ପୀର ପ୍ରାଣକୁ ଉଦ୍‌ବେଳିତ କରେ । ଫଳରେ ଯାହା ଅତି ତୁଚ୍ଛ ଏବଂ ସାମାନ୍ୟ ତାରି ମଧ୍ୟରେ କବି ଅନେ୍ୟାନ୍ୟ ରହସ୍ୟର ସଙ୍କେତ ଓ ଇଙ୍ଗିତର ସନ୍ଧାନ ପାଇଥାଏ । କବି ବା ଶିଳ୍ପୀ ନିଜର ଉପଲବ୍ଧିକି ପାଠକ ଆଗରେ ପରିବେଷଣ କରିବା ପାଇଁ ଯେତେବେଳେ ଚେଷ୍ଟାକରେ ସେତେବେଳେ ସେ ସଙ୍କେତ ସାହାଯ୍ୟରେ ରହସ୍ୟମୟ ଉପଲବ୍ଧି ପ୍ରକାଶ କରିଥାଏ । ଜୀବନର ଏହି ଇନ୍ଦ୍ରିୟାତୀତ ରହସ୍ୟ ଓ ସାଙ୍କେତିକତା ସର୍ବପ୍ରଥମେ କବିର କବିତାର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । ତେଣୁ ଆଧୁନିକ ସାହିତ୍ୟର ପ୍ରଧାନ ଉପଜୀବ୍ୟ ପ୍ରତୀକ । ପ୍ରତୀକ ସାହାଯ୍ୟରେ ସତ୍ୟର ଅସଲ ସ୍ୱରୂପ ପ୍ରକାଶ ପାଇଥାଏ ଏବଂ ଅଖଣ୍ଡ ଭାବାଲୋକ ଉଦ୍‌ଘାଟିତ ହୋଇଥାଏ ।

ଫରାସୀ ପ୍ରତୀକବାଦ ସର୍ବପ୍ରଥମେ ଅତି ଜନପ୍ରିୟ ହୋଇପାରିଥିଲା । ଏହି ପ୍ରତୀକବାଦ ଉପରେ ଗୁରୁତ୍ୱ ଆରୋପ କରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶର ବହୁ କବି ସ୍ୱରଚିତ କବିତାରେ ପ୍ରତୀକର ପ୍ରୟୋଗ କରିଅଛନ୍ତି । ଫରାସୀ ପ୍ରତୀକବାଦୀ ବା Symbolistମାନଙ୍କ ମଧ୍ୟରେ De Gourment,

Rimband, Mallarme ଏବଂ Verlain ପ୍ରଧାନ । ଏମାନଙ୍କ ପ୍ରଭାବରେ 'ପ୍ରଭାବିତ ହୋଇ ବର୍ଣ୍ଣିଷ୍ଣୁ ଇଂରେଜ କବି T. E. Hulme, Ezra Pound, T. S. Eliot ଏବଂ W. B. Yeats ଶ୍ରେଷ୍ଠ ପ୍ରତୀକବାଦୀ କବି ରୂପାବରେ ସୁପରିଚିତ । ବିଖ୍ୟାତ କବି W. B. Yeats ମାଲ୍ଲର୍ମେଙ୍କଦ୍ୱାରା କେତେ ଦୂର ପ୍ରଭାବିତ ହୋଇଥିଲେ ତାହା ତାଙ୍କ ପତ୍ରାବଳୀରୁ ଜଣାପଡ଼େ । Yeats ତାଙ୍କ ପତ୍ରରେ ଲେଖିଛନ୍ତି –

'Roger Fry's translation of Mallarme'······ I find it exciting, as it shows me the road. I and others of my time went for certain furlongs. It is not the way I go now, but one of the legitimate roads. †

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଫରାସୀ ପ୍ରତୀକବାଦ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି—

'ସିଂବଲ୍ ବା ପ୍ରତୀକର ଗୁରୁତ୍ୱ ଅବିସଂବାଦୀ । କାରଣ ଏହା କଳ୍ପନାକୁ ଏକ ଯୁକ୍ତିଯୁକ୍ତ ରୂପରେ ବାନ୍ଧି ରଖେ ( Clothes the Idea in sensible form ) । ଏଇ ଉଦ୍ଦେଶ୍ୟରେ ଏମାନେ ପାରମ୍ପରିକ ପନ୍ଥାଧରି ଅଗ୍ରସର ହୋଇଥାନ୍ତି । କିନ୍ତୁ ଅଜଣା (Unknown) ଉପରେ ର୍ଯାବୋଙ୍କର କର୍ତ୍ତୃତ୍ୱର ଆକର୍ଷଣ, ମାଲର୍ମେଙ୍କର Love of abstraction ଏବଂ ଲ୍ୟାଫାର୍ଗ୍ଙ୍କର ସଠିକ ଅଥଚ ଖାମଖିଆଲି ରୂପକଳ୍ପ ଏହାକୁ Generalisationର ବିପଦ ଆଡ଼କୁ ଠେଲି ନେଇଥିଲା ।' *

ପ୍ରତୀକବାଦୀ ମାଲର୍ମେ ଜଟିଳ ଆଙ୍ଗିକ ବ୍ୟବହାର କରୁଥିଲେ । ଯାହା ପାଠକଙ୍କ ଦୃଷ୍ଟିରୁ ବାସ୍ତବ, ତାକୁ ଅବାସ୍ତବତାରେ ରୂପାନ୍ତରିତ କରି

---

† Letters of W. B. Yeats P. 887

* କବିତା—୧୯୬୨ ରେ ସ୍ଥାନ ପାଇଥିବା 'ଫରାସୀ ପ୍ରତୀକବାଦ ଓ ଇମେଜିଜମ୍' ପ୍ରବନ୍ଧ ଦ୍ରଷ୍ଟବ୍ୟ ।

Unrealର ପ୍ରତିପାଦନ ତାଙ୍କ ଲେଖାରେ ଦେଖିବାକୁ ମିଳେ । 'ତାଙ୍କର ବରଫରେ ପଥର ପାଲଟି ଯାଇଥିବା ହଂସ ପ୍ରତୀକଟି 'ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

ରିଁବୋଙ୍କ କବିତାରେ ରହସ୍ୟମୟର (Mystery) ଭାବ ଫୁଟାଇବାର ପ୍ରୟାସ ଦେଖିବାକୁ ମିଳେ । କେବଳ ରହସ୍ୟବାଦ ନୁହେଁ, ରହସ୍ୟବାଦର ଗୁଣର ପ୍ରତିପାଦନ ତାଙ୍କର ମୂଳ ଲକ୍ଷ୍ୟ । ନୌକାର ନିରୁଦ୍ଦେଶ ଯାତ୍ରା କବିଙ୍କର Unknownର ଆବିଷ୍କାରରେ ଯାତ୍ରାର ପ୍ରତୀକ । ଏହିଭଳି ପ୍ରତୀକକୁ ବୁଝିବା ପାଇଁ ବୁଦ୍ଧି କିମ୍ବା ପ୍ରଜ୍ଞାର ଆବଶ୍ୟକତା ନଥାଏ ବରଂ ଲେଖକ ବା ପାଠକର ଅନ୍ତର୍ଦୃଷ୍ଟି ସାହାଯ୍ୟରେ ଅତି ସହଜରେ ପ୍ରତୀକର ଭାବରସକୁ ଆସ୍ୱାଦନ କରିଯାଇଥାଏ । ଅନ୍ତର୍ଦୃଷ୍ଟି ଦ୍ୱାରା ଅସଲ ସତ୍ୟର ଉପଲବ୍ଧି ସମ୍ଭବପର ହୋଇଥାଏ ଏବଂ ପ୍ରତୀକର ଆବେଦନ ଅନ୍ତରକୁ ରସାପ୍ଲୁତ କରିଥାଏ ।

ଆଜିର ଏ ବୈଜ୍ଞାନିକ ଯୁଗରେ ବୈଜ୍ଞାନିକ ଯେତିକି ଜାଗତିକ ରହସ୍ୟ ଉଦ୍‌ଘାଟନ କରିଚାଲିଛି ସେତିକି ବ୍ୟକ୍ତିବିଶେଷ ଅନ୍ତର୍ମୁଖୀ ହୋଇ ଠିଆ ହେଉଛି ସମାଜରେ । ବିଜ୍ଞାନର ଯଥେଷ୍ଟ ପ୍ରଭାବ ଫଳରେ ମଣିଷର ଆଜି କୌଣସି କଥାରେ ବିସ୍ମିତ ହେବାର କାରଣ ନାହିଁ । ଶତ ସହସ୍ର ବର୍ଷ ଧରି ଚନ୍ଦ୍ରକୁ ଦେବତାରୂପେ ପୂଜା କରି ଆସୁଥିଲୁ କିନ୍ତୁ ଆଜି ସେହି ଚନ୍ଦ୍ରମଣ୍ଡଳର ମୃତ୍ତିକା ସଂଗ୍ରହ କରି ପରୀକ୍ଷା ନିରୀକ୍ଷା କରିବାରେ ଆମେ ବ୍ୟସ୍ତ । ଯାହା ଏକଦା ରହସ୍ୟାବୃତ୍ତ ହୋଇ ରହିଥିଲା ଆଜି ତାହାକୁ ବିଜ୍ଞାନ ବୁଦ୍ଧିଗ୍ରାହ୍ୟ କରି ତୋଳିଛି । କିନ୍ତୁ ଏହି ଭୌତିକ ଜଗତର ଅନ୍ତରାଳରେ ଆଉ ଏକ ସତ୍ତା ରହିଛି ବୋଲି ମଣିଷର ଯେଉଁ ଗଭୀର ବିଶ୍ୱାସ ରହିଆସିଛି ସେହି ବିଶ୍ୱାସ ଆଜି ବି ଅତୁଟ ରହିଛି; ଅଥଚ ବିଜ୍ଞାନ ତାର କୌଣସି ସନ୍ତୋଷଜନକ ଉତ୍ତର ଦେଇପାରୁନାହିଁ । କିନ୍ତୁ ଭାବୁକର ଅନ୍ତରରେ ବିଶ୍ୱ ସୌନ୍ଦର୍ଯ୍ୟର ନାନାଦୃଶ୍ୟ ଦେଇ ସେହି ସତ୍ତାର ଇଙ୍ଗିତ ସଦାସର୍ବଦା ସ୍ପନ୍ଦିତ ଏବଂ ପ୍ରତିଧ୍ୱନିତ । ଫଳରେ ଏହି ଜଗତ ବାହାରେ ଯେଉଁ ଅନ୍ୟ ଏକ ଜଗତ ଅଛି ବୋଲି ସେ ବିଶ୍ୱାସ ରଖିଛି ସେହି ଜଗତର ଅଶ୍ରୁତ-ସଙ୍ଗୀତ ଧ୍ୱନି ପ୍ରତିମୁହୂର୍ତ୍ତରେ ଭାବୁକର କାନରେ ବାଜି ଅନ୍ତରରେ ଅପୂର୍ବ ସ୍ୱର

ରହସ୍ୟ ସୃଷ୍ଟି କରିଥାଏ । ଶିଳ୍ପୀ ବା ଭାବୁକ ସେସବୁ ଗଭୀରତମ ଅନୁଭୂତିକୁ ତାର ଅପୂର୍ବ ସୃଷ୍ଟିରେ ପ୍ରକାଶ କରିବା ପାଇଁ ସତତ ବ୍ୟାକୁଳ ହୋଇଥାଏ । ତେଣୁ ସେ ସହଜରେ ଅନୁଭୂତିକୁ ପ୍ରକାଶ ନକରିପାରି ପ୍ରତୀକ ସାହାଯ୍ୟରେ ତାକୁ ଅତି ସୁନ୍ଦରଭାବେ ପାଠକ ଆଗରେ ପ୍ରକାଶ କରିଥାଏ ।

ଏହିସବୁ ଦୃଷ୍ଟିରୁ ଆଧୁନିକ ସାହିତ୍ୟରେ ପ୍ରତୀକର ପ୍ରୟୋଗ ବିଶେଷଭାବେ ଦେଖିବାକୁ ମିଳେ । ଭାରତୀୟ ସାହିତ୍ୟରେ ବିଶ୍ୱକବି ରବୀନ୍ଦ୍ରନାଥ ଶ୍ରେଷ୍ଠ ରହସ୍ୟବାଦୀ ଓ ପ୍ରତୀକବାଦୀ କବି ଏବଂ ନାଟ୍ୟକାରରୂପେ ସୁପରିଚିତ । ତାଙ୍କ ସ୍ୱରଚିତ 'ଡାକଘର' ଓ 'ରକ୍ତ କରବୀ' ଶ୍ରେଷ୍ଠ ପ୍ରତୀକୀ ରଚନା । ଓଡ଼ିଆ ସାହିତ୍ୟରେ ବହୁ ଆଧୁନିକ କବି, ନାଟ୍ୟକାର ଓ କ୍ଷୁଦ୍ରଗଳ୍ପକାର ପ୍ରତୀକର ଆଶ୍ରୟ ନେଇଛନ୍ତି । ପଦ୍ମଶ୍ରୀ ସଚି ରାଉତରାୟଙ୍କ 'ପାଣ୍ଡୁଲିପି', 'କବିତା—୧୯୬୨', କବି ଶ୍ରୀ ଅନନ୍ତ ପଟ୍ଟନାୟକ, ଶ୍ରୀ ରମାକାନ୍ତ ରଥ, ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀ ଜୀବନାନନ୍ଦ ପାଣି, ଶ୍ରୀ ଗୁରୁପ୍ରସାଦ ମହାନ୍ତି ଓ ଭାନୁଜୀ ରାଓଙ୍କ କବିତାଗୁଡ଼ିକ ପ୍ରତୀକବାଦର ଶ୍ରେଷ୍ଠ ସଙ୍କେତ ଦେଇ ଆତ୍ମପ୍ରକାଶ କରିଛି । ଗାଳ୍ପିକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ 'ରୁଟି ଓ ଚନ୍ଦ୍ର', 'ମରାଳର ମୃତ୍ୟୁ' ଏବଂ 'ସବୁଜପତ୍ର ଓ ଧୂସର ଗୋଲାପ', ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ଅଧିକାଂଶ କ୍ଷୁଦ୍ରଗଳ୍ପ ବିଶେଷତଃ 'ଘାସ', ଶ୍ରୀ ଅଖିଳମୋହନ ପଟ୍ଟନାୟକଙ୍କ 'ଝଡ଼ର ଇଗଲ ଓ ହରିଣୀର କୃଷ୍ଣସାର' ପ୍ରଭୃତି ଗଳ୍ପଗୁଡ଼ିକ ବିଶେଷଭାବେ ପ୍ରତୀକଧର୍ମୀ ବା ଇଙ୍ଗିତଧର୍ମୀ । ନାଟ୍ୟକାର ଶ୍ରୀ ମନୋରଞ୍ଜନ ଦାସ, ଶ୍ରୀ ବିଜୟ ମିଶ୍ର ଏବଂ ଶ୍ରୀ ବିଶ୍ୱଜିତ୍ ଦାସଙ୍କ ଆଧୁନିକ ନାଟକ ପ୍ରତୀକୀ ନାଟକ । 'ଅରଣ୍ୟ ଫସଲ', 'ଶବ୍ଦବାହକମାନେ', 'ବନହଂସୀ' ଏବଂ 'ନାଳିପାନ ରାଣୀ ଓ କଳାପାନ ଟୀକା' ଏହାର ଏକ ଜୀବନ୍ତ ଆଲେଖ୍ୟ ।

ପ୍ରତୀକୀ ରଚନା ବିରୁଦ୍ଧରେ ଦୁର୍ବୋଧତାର ଅଭିଯୋଗ ଶୁଣାଗଲେ ବି ଆଜି ତାହା ଅତି ଲୋକପ୍ରିୟ ହୋଇପାରିଛି ଏବଂ ପାଠକ ଜୀବନର ପ୍ରକୃତ ଅର୍ଥ ଜାଣିବାକୁ ପାଇଛି । ଅପରିସୀମ ସୌନ୍ଦର୍ଯ୍ୟବୋଧକୁ ପ୍ରକାଶ କରିବା ପାଇଁ ଲେଖକ ପ୍ରତୀକକୁ ଶ୍ରେଷ୍ଠ ଅଥଚ ଏକମାତ୍ର ଉପାୟରୂପେ ସାଦରେ ଗ୍ରହଣ କରିଛି ।

# ହାସ୍ୟରସ

'କୌତୁକ ସୃଷ୍ଟି କରିବାଲାଗି ଏବଂ ପ୍ରସଙ୍ଗୋଚିତ କୌତୁହଳ ଉଦ୍ଦୀପନା ପାଇଁ ହାସ୍ୟରସ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଥାଏ । ଏହାର ଅବତାରଣା କେତେବେଳେ ପ୍ରବନ୍ଧରେ, ଉପନ୍ୟାସରେ, କେତେବେଳେ ନାଟକ ଓ କ୍ଷୁଦ୍ରଗଳ୍ପରେ ଏବଂ କେତେବେଳେ କାବ୍ୟ କବିତାରେ କରାଯାଇଥାଏ । ଆଳଙ୍କାରିକଙ୍କ ମତରେ ନ'ଟି ରସ ମଧ୍ୟରୁ ହାସ୍ୟରସର ଏକ ବିଶିଷ୍ଟ ସ୍ଥାନ ରହିଅଛି ।

ହାସ୍ୟରସ ଏକପ୍ରକାର ଭାବ-ଦୃଷ୍ଟି । ଲେଖକ ଏହା ସାହାଯ୍ୟରେ ମାନବ ଜୀବନର ଅସଙ୍ଗତି ଓ ବୈଷମ୍ୟକୁ ଉଦାର ଅନୁଭୂତିଦ୍ୱାରା ଗ୍ରହଣ କରି ବୈଷମ୍ୟମୟ ମାନବ ଜୀବନକୁ ସୁନ୍ଦର ହାସ୍ୟୋଜ୍ଜ୍ୱଳ ରଙ୍ଗରେ ଗଢିଥାଏ । ଜଗତ ଓ ଜୀବନ ପ୍ରତି ସହୃଦୟ ମନୋଭାବ ପ୍ରକାଶ ହିଁ ଉତ୍କୃଷ୍ଟ ହାସ୍ୟରସର ଲକ୍ଷଣ । କେହି କେହି କହନ୍ତି, **'Man is a laughing animal'**. ବାସ୍ତବିକ୍ ଦେଖିବାକୁ ଗଲେ ସମସ୍ତ ପ୍ରାଣୀଠାରୁ କେବଳ ମଣିଷ ହାସ୍ୟରସ ପ୍ରତି ସଚେତନ । ତେଣୁ ସେ ଜଗତର ଶ୍ରେଷ୍ଠ ପ୍ରାଣୀରୂପେ ପରିଚିତ ।

ହାସ୍ୟରସିକର ଦୃଷ୍ଟିଭଙ୍ଗୀ ଅତି ବ୍ୟାପକ । ସେ ସର୍ବଦା ସହାନୁଭୂତି ପ୍ରତି ସଚେତନ । ଏହି ସହାନୁଭୂତି ବ୍ୟତୀତ ହାସ୍ୟରସ ସୃଷ୍ଟି ସମ୍ଭବପର ନୁହେ । ହାସ୍ୟରସିକ ସଂସ୍କାରବାଧାର ଉଦାର ଦୃଷ୍ଟିଭଙ୍ଗୀ ନେଇ ଜଗତ ଓ ଜୀବନକୁ ଦେଖିଥାଏ । ତେଣୁ ଇଂରେଜ ସମାଲୋଚକଙ୍କ ମତରେ—

**"The humourist sees life more widely and wisely than any of the seers. It is not an intense and narrow nature......the humourist can gaze at the totality of world's life."......**

ହାସ୍ୟରସ ଏକପ୍ରକାର ଅସଙ୍ଗତ ଉଦ୍ଭଟ ଚିନ୍ତାଦ୍ୱାରା ଆମ ମନରେ ସୃଷ୍ଟି ହୋଇଥାଏ । ମଣିଷର ଇଚ୍ଛା ସହିତ ଅବସ୍ଥାର ଅସଙ୍ଗତି, ଉଦ୍ଦେଶ୍ୟ ସହିତ ଉପାୟର ଅସଙ୍ଗତି ଏବଂ କଥା ସହିତ କାର୍ଯ୍ୟର ଅସଙ୍ଗତି ହାସ୍ୟରସର ପ୍ରଧାନ ଉପଜୀବ୍ୟ । ତେଣୁ ଅଧିକାଂଶ ସ୍ଥଳରେ ଏହି ଅସଙ୍ଗତି-ବୋଧରୁ ହାସ୍ୟରସର ଜନ୍ମ । ବେଳେବେଳେ ବିସ୍ମୟକର ଘଟଣା, ବୈହ୍ୱିକ ବିକୃତି ଏବଂ କୌଣସି ବସ୍ତୁ ସମ୍ବନ୍ଧରେ ଭ୍ରାନ୍ତି ଜନ୍ମିବା ପ୍ରଭୃତିରୁ ବି ହାସ୍ୟରସ ବା **Humour** ସୃଷ୍ଟି ହୋଇଥାଏ । ଏଥିରେ ପ୍ରଚ୍ଛନ୍ନ ଭାବେ ପ୍ରସନ୍ନ ଆନନ୍ଦବୋଧ କିମ୍ବା ବେଦନାବିଧୌତ ନିର୍ଲିପ୍ତ ହାସ୍ୟର ବ୍ୟଞ୍ଜନା ଥାଏ ।

ଏହି ବିଶୁଦ୍ଧ ହାସ୍ୟରସର ଅବତାରଣା ପ୍ରାଚୀନ କାଳରୁ କାବ୍ୟ, କବିତାରେ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟରେ ମଧ୍ୟ ବହୁଳ ଭାବେ ହାସ୍ୟରସର ପରିବେଷଣ କରାଯାଇଛି । 'ରୁଦ୍ରସୁଧାନିଧି', 'ସାରଳା ମହାଭାରତ', ଯଦୁମଣିଙ୍କ କାବ୍ୟ, କବିତା, ବଡ଼ଜେନାଙ୍କ 'ଚତୁରବିନୋଦ' ଓ ଫକୀରମୋହନଙ୍କ ଗଳ୍ପ, ଉପନ୍ୟାସରେ ହାସ୍ୟରସର ଅବତାରଣା ସ୍ଥଳବିଶେଷରେ ଅତି ସୁନ୍ଦର ଭାବେ କରାଯାଇଛି ।

ସଂସ୍କାରବାଦୀ ଫକୀରମୋହନ ଅପୂର୍ବ ଭାଷା, କମନୀୟ ଭାବ ଓ ଘଟଣାବଳୀର ସୁଷମାମୟ ବିନ୍ୟାସ ଭିତରେ ହାସ୍ୟରସ ପ୍ରତିଷ୍ଠା କରିଛନ୍ତି । ଏ ହାସ୍ୟରସ ଶୋକର ତୀବ୍ରତା ଉପଶମ ପାଇଁ ଉଦ୍ଦିଷ୍ଟ । ବାସ୍ତବ ଦୁନିଆର ନିତିଦିନିଆ ଜୀବନର ଆଚାର, ବ୍ୟବହାର ଏବଂ ବ୍ୟକ୍ତିବିଶେଷର ପ୍ରକୃତି ଓ କର୍ମ ପ୍ରତି ସେ ବ୍ୟଙ୍ଗବିଦ୍ରୂପ କରିଛନ୍ତି ସତ; କିନ୍ତୁ ସବୁଠାରେ ସେ ସେହି ହାସ୍ୟର ଅନ୍ତରାଳରେ ରହି ସଂଶୋଧନ କରିବା ପାଇଁ ଚେଷ୍ଟା କରିଛନ୍ତି ।

ହାସ୍ୟରସର ବିଭିନ୍ନ ଶ୍ରେଣୀ ବିଭାଗ ରହିଛି । ହାସ୍ୟରସାତ୍ମକ ସାହିତ୍ୟ ଆଲୋଚନା କଲେ ଜଣାଯାଏ ସାହିତ୍ୟିକମାନେ **Humour, Wit, Satire, Irony, Sarcasm** ପ୍ରଭୃତିର ସାହାଯ୍ୟରେ ହାସ୍ୟରସ ସୃଷ୍ଟି କରିଥାନ୍ତି । ଆଗରୁ **Humour** ବା ବିଶୁଦ୍ଧ ହାସ୍ୟରସର ପରିଚୟ ଦିଆଗଲା । ଅନ୍ୟଗୁଡ଼ିକ ସମ୍ପର୍କରେ ଆଲୋଚନା କରିବା ।

Wit ଏକ ମାର୍ଜିତ ବୁଦ୍ଧିର ବାକ୍‌ଚାତୁରୀକୁ ବୁଝାଏ। କେବଳ ବୁଦ୍ଧିଜୀବୀ ଶ୍ରୋତା ଭଲଭାବେ ଏହାକୁ ଗ୍ରହଣ କରିଥାନ୍ତି। Wit ସୃଷ୍ଟି ପାଇଁ ଲେଖକର ତୀକ୍ଷ୍ଣ ବୁଦ୍ଧି ଓ ଶବ୍ଦ-ନୈପୁଣ୍ୟ ପ୍ରୟୋଜନ। ଏହା ବିଶେଷ ଭାବେ ପାଠକ ମନରେ ବା ଶ୍ରୋତାର ମନରେ ଆନନ୍ଦ ଓ ବିସ୍ମୟ ସୃଷ୍ଟି କରିଥାଏ। Wit ସାମାନ୍ୟ ଶବ୍ଦ ବ୍ୟଞ୍ଜନାରେ ହାସ୍ୟରସ ଉଦ୍ରେକ କରେ। ଏହା ବୁଦ୍ଧିମତ୍ତା, ପାଣ୍ଡିତ୍ୟ ଓ ସଂସ୍କୃତିର ପରିଚାୟକ। Wit ସମ୍ପର୍କରେ ଆଲୋଚନା କରିବାକୁ ଯାଇ 'A Theory of Laughter' ବହିରେ ଶ୍ରୀଯୁକ୍ତ V. K. Menon କହିଛନ୍ତି— "A person always seeks the ingenious and the remote when he wants to be witty." Wit ପାଶ୍ଚାତ୍ୟ ସାହିତ୍ୟରେ ପ୍ରଚୁର ଭାବେ ଦେଖିବାକୁ ମିଳେ ଏବଂ ଭାରତୀୟ ସାହିତ୍ୟରେ ବି କେତେ ଜଣ ବିଶିଷ୍ଟ ହାସ୍ୟରସିକଙ୍କ ରଚନାରେ wit ପ୍ରକାଶ ପାଇଛି। ଆମର ପ୍ରାଚୀନ ନାଟକଗୁଡ଼ିକରେ ବିଦୂଷକ ଚରିତ୍ର ମାଧ୍ୟମରେ witର ଅବତାରଣା କରାଯାଇଛି। ଏହି wit ପ୍ରତ୍ୟୁତ୍ପନ୍ନମତିର ପରିଚାୟକ। ଆକବରଙ୍କ ସଭାର ହାସ୍ୟରସିକ ବୀରବଲ୍, ହାସ୍ୟରସିକ ଯଦୁମଣି ଏବଂ ସ୍ଥାନବିଶେଷରେ ଗୋପାଳ ଡୁହରାଜଙ୍କ wit ଅତି ଅସାଧାରଣ ଏବଂ ହୃଦୟସ୍ପର୍ଶୀ।

Satire—ଏଥିରେ ବ୍ୟଙ୍ଗବିଦ୍ରୂପ ସୁସ୍ପଷ୍ଟ। ହୃଦୟର ଏକ ଆବେଗ ଜନିତ ପ୍ରତିକ୍ରିୟାରୁ ଏହାର ଜନ୍ମ। ଏଥିରେ ଆନନ୍ଦ କଲ୍ଲୋଳରେ ଭାସୁଥିବା ବିମଳ ହାସ୍ୟରସ ଦେଖିବାକୁ ମିଳେନା; କିନ୍ତୁ ଯେଉଁ ହାସ୍ୟରସ ଦେଖା-ଦେଇଥାଏ ତାହା ଉଦ୍ଦେଶ୍ୟଯୁକ୍ତ। ବ୍ୟଙ୍ଗ ବା Satire ମାଧ୍ୟମରେ ଅଧଃପତିତ ସାମାଜିକ ଜୀବନ, ରାଷ୍ଟ୍ରଗତ ଦୁର୍ନୀତିକୁ ସମାଲୋଚନା କରାଯାଇଥାଏ। ତେଣୁ ସମାଜକୁ ସଜାଡ଼ିବା ପାଇଁ ବ୍ୟଙ୍ଗକୁ ଏକ ଅମୋଘ ଅସ୍ତ୍ର ରୂପେ ଅନେକ ସଂସ୍କାରବାଦୀ ଲେଖକ ଗ୍ରହଣ କରିଥାନ୍ତି। ଡ୍ରାଇଡେନ୍ ଯଥାର୍ଥରେ ତେଣୁ Satire ସମ୍ପର୍କରେ କହିଛନ୍ତି—

"To tell man freely of their foulest faults,
To laugh at their vain deeds and vain thoughts."

ଜନ୍ ପିଟରଙ୍କ ମତରେ ସଂସ୍କାର ମନୋବୃତ୍ତି (token desire for reforms) ନେଇ ଲେଖକ ବ୍ୟଙ୍ଗାତ୍ମକ ରଚନା ସୃଷ୍ଟି କରିଥାଏ । ଏଥିରେ ଲେଖକଙ୍କ ଅନ୍ତରର ବାଣୀ, ଉଚ୍ଛ୍ୱାସ ଓ ଆବେଗ ପ୍ରତିଫଳିତ । ବ୍ୟଙ୍ଗାତ୍ମକ ରଚନା ପାଠକଲେ ପାଠକ ହସି ଉଠେ ସତ; କିନ୍ତୁ ସେହି ହସକୁ ଖାଲି ସେ ହସି ହସି ଉଡାଇ ଦିଏନାହିଁ । ଏହା ସମାଲୋଚିତ ବ୍ୟକ୍ତି ବା ସମାଜକୁ ଆଘାତ ଦେଇଥାଏ । ଏହି ଧରଣର ହାସ୍ୟରସ ଅତୃପ୍ତ ମାଧୁର୍ଯ୍ୟ ମଧ୍ୟରେ ତୀବ୍ରତାର ହଳାହଳ ନେଇ ପ୍ରକାଶ ପାଇଥାଏ ଏବଂ ବେଳେବେଳେ ନିବିଡ଼ ସ୍ନେହ ଓ ସହାନୁଭୂତି ନେଇ ପାଠକ ନିକଟରେ ଦେଖା ଦେଇଥାଏ ।

ଇଂରେଜ ସାହିତ୍ୟରେ Dryden ଓ Swift ଉଭୟେ ବ୍ୟଙ୍ଗାତ୍ମକ ରଚନା (Satire) ସୃଷ୍ଟି କରିବାରେ ସିଦ୍ଧହସ୍ତ । ତତ୍କାଳୀନ ସାମାଜିକ ଓ ବ୍ୟକ୍ତିଗତ ଜୀବନରେ ଦେଖାଦେଇଥିବା ଅନୀତି, ଅନାଚାର ବିରୁଦ୍ଧରେ ଉଭୟେ ଲେଖନୀ ଚାଳନା କରିଥିଲେ । Jonathan Swift ଙ୍କ 'Gullivers Travel' ଏକ ଶ୍ରେଷ୍ଠ ବ୍ୟଙ୍ଗାତ୍ମକ ରଚନା । ସେଥିରେ ସେ ତତ୍କାଳୀନ ସାମାଜିକ ଅବସ୍ଥା ଓ ରାଜନୈତିକ ବ୍ୟବସ୍ଥାକୁ କଟୁ ସମାଲୋଚନା କରିଛନ୍ତି । ପାର୍ଲିଆମେଣ୍ଟ ସଭ୍ୟମାନଙ୍କୁ ପରୋକ୍ଷରେ ସମାଲୋଚନା କରି ଏକ ସୁସ୍ଥ ପରମ୍ପରା ସୃଷ୍ଟି ପାଇଁ ଡାକ ଦେଇଛନ୍ତି ।

ବ୍ୟଙ୍ଗ ମାଧ୍ୟମରେ ରାଧାନାଥ, ଫକୀରମୋହନ, ମଧୁସୂଦନ ଓ ଗଙ୍ଗାଧର ତତ୍କାଳୀନ ସମାଜର କଠୋର ସମାଲୋଚନା କରିଛନ୍ତି । ଆଧୁନିକ ସଭ୍ୟତାର ବିକଟ ରୂପ ଦେଖି ସମସ୍ତଙ୍କ ଲେଖନୀ ମୁଖର ହୋଇ ଉଠିଛି, ଏବଂ ବ୍ୟଙ୍ଗ ରଚନାକୁ ସମାଜ ସଂସ୍କାରର ଅନ୍ୟତମ ଉପାୟ ବା ପନ୍ଥା ରୂପେ ଏହି ସମସ୍ତ ଜାତୀୟବାଦୀ ଲେଖକ ସାଦରେ ଗ୍ରହଣ କରିଅଛନ୍ତି ।

ତେଣୁ ଏହି ଦୃଷ୍ଟିରୁ ରାଧାନାଥଙ୍କ 'ଦରବାର', ଫକୀରମୋହନଙ୍କ 'ମୁଁ ହାଟ ବାହୁଡା', ମଧୁସୂଦନଙ୍କ 'ସାବାସ୍ ସାହିତ୍ୟ ଚର୍ଚ୍ଚା' ଏବଂ ଗଙ୍ଗାଧରଙ୍କ 'ତାକୁ ମଧ୍ୟ ବୋଲୁଥାନ୍ତି ଧର୍ମ ଅବତାର' ସୃଷ୍ଟି ହୋଇଥିବା ମନେହୁଏ । କିନ୍ତୁ ବ୍ୟକ୍ତିବିଶେଷଙ୍କ ଦୋଷ, ଦୁର୍ବଳତା, ଅନ୍ୟାୟ, ଅନୀତି

ପ୍ରତି କଟାକ୍ଷପାତ କରି କବିସମ୍ରାଟ ବଳଦେବ ତାଙ୍କର ଶ୍ରେଷ୍ଠ ବ୍ୟଙ୍ଗାତ୍ମକ କବିତା 'ଜଗତେ କେବଳ' ଓ 'ସରସେ କୁହାଯାଉଥାଏ ସିନା' ରଚନା କରିଥିବା ଜଣାଯାଏ । ବିପଥଗାମୀ ମଣିଷକୁ ସତ୍‌ପଥକୁ ଟାଣି ଆଣିବା ପାଇଁ Satire ହେଉଛି ଏକ ଉତ୍କୃଷ୍ଟ ଅସ୍ତ୍ର ।

Irony:—Satire ରେ ବ୍ୟଙ୍ଗ ଓ ବିଦ୍ରୂପ ସ୍ପଷ୍ଟ ଭାବେ ଦେଖା ଯାଇଥାଏ । କିନ୍ତୁ Irony ରେ ବ୍ୟଙ୍ଗ ଓ ବିଦ୍ରୂପ କୋମଳ ଭାବେ ପ୍ରକାଶ ପାଇଥାଏ । ଲେଖକ Irony ସୃଷ୍ଟି କରି ସେଥିରେ ନିରପେକ୍ଷ ଭାବେ ପରୋକ୍ଷ ଅର୍ଥର ଇଙ୍ଗିତ ଦେଇଥାଏ । କଥା କଥାକେ ମଣିଷର ଦୁଃଖ, ଦୁର୍ଦ୍ଦଶା, ଅଧୋଗତି ଦେଖି ଅନେକେ ଅତର୍କିତ ଭାବେ କହିଥାନ୍ତି ଭାଗ୍ୟର ପରିହାସ ବା ବିପର୍ଯ୍ୟୟ । ଏହି କଥାର ଅନ୍ତରାଳରେ ମଣିଷ ମନର ଯେଉଁ ମନପ୍ରବୃତ୍ତି ନିହିତ ଅଛି ତାହା ବିଦ୍ରୂପାତ୍ମକ ଅଭିବ୍ୟକ୍ତିର ରୂପାନ୍ତର ମାତ୍ର ।

"ଘୁରି ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।"

କବିବର ରାଧାନାଥଙ୍କ ଏହି ଉକ୍ତି ସାଧାରଣତଃ 'Irony of fate' ନାମରେ ନାମିତ । କିନ୍ତୁ ପ୍ରକୃତରେ ଏହା ଏକ ବିଦ୍ରୂପାତ୍ମକ ଭାବ ନେଇ ପ୍ରକାଶିତ । କେହି କେହି Ironyକୁ ଦୁଇ ଭାଗରେ ବିଭକ୍ତ କରିଥାନ୍ତି । ଗୋଟିଏ ମୌଖିକ, ଅନ୍ୟଟି ପ୍ରତ୍ୟକ୍ଷ । ପ୍ରଥମଟି ଅନେକ ସମୟରେ ଅଭିପ୍ରେତ ବ୍ୟକ୍ତିକୁ ସୂକ୍ଷ୍ମ ଆଘାତ ଦେଇଥାଏ କିନ୍ତୁ ଦ୍ୱିତୀୟଟି ବାସ୍ତବ ଓ ଆକସ୍ମିକ । ଏଥିରେ ଆଶା ଓ ଆକାଂକ୍ଷାର ଶବ ଥାଏ । ଏହାକୁ Irony of fate ବୋଲି କୁହାଯାଇଥାଏ ।

ଅନେକ ସମୟରେ ଆମ୍ଭେମାନେ 'Dramatic Irony' ସମ୍ପର୍କରେ ଆଲୋଚନା କରିଥାଉ । ଏହି ପ୍ରକାର Irony ସୃଷ୍ଟି ନିମିତ୍ତ ଅଭିନେତା ଓ ଅଭିନେତ୍ରୀ ଦାୟୀ । ସେମାନଙ୍କ ନିର୍ବୋଧତା ହିଁ Ironyର ପରିପୂରକ ଉପାଦାନ । ଧାରଣା ଓ କାର୍ଯ୍ୟ ମଧ୍ୟରେ ବୈଷମ୍ୟ ଦେଖି ଦର୍ଶକମଣ୍ଡଳୀ ହସି ଉଠିଥାନ୍ତି । ପ୍ରକୃତ ବସ୍ତୁର ସ୍ୱରୂପ ଲୁକ୍କାୟିତ କରି ରଖିବା ଆଚରଣରେ ହିଁ Irony ନିହିତ ଥାଏ ।

Irony ବୁଝିବା ଏବଂ ନବୁଝିବା ଏକ ମହାପରୀକ୍ଷା । Drydenଙ୍କ ମତରେ "To understand or not to understand irony is an acid test of the literal mind."

ପାଇମନ୍ କହନ୍ତି--"The Ironist always watches the doings of humanity with a half smile." ଯେ Satire ବା ବ୍ୟଙ୍ଗ କରେ ତାର ହସେଇବା ଉଦ୍ଦେଶ୍ୟ ଥାଏ, କିନ୍ତୁ ଯେ ଚତୁର କରେ ସେ ନିର୍ବୋଧ ଲୋକଙ୍କ ପିଠିରେ ଚାବୁକ ମାରି ତାକୁ ଉଦାରେ ପକେଇଦିଏ । ତାକୁ ସଂଶୋଧନ କରିବା ତାର ପ୍ରଧାନ ଉଦ୍ଦେଶ୍ୟ ।

ସାଧାରଣତଃ ବକ୍ରୋକ୍ତିକ ପାଶ୍ଚାତ୍ୟ ସମାଲୋଚକ Sarcasm ଆଖ୍ୟା ଦେଇଥାନ୍ତି । ବକ୍ରୋକ୍ତିର ବିଶିଷ୍ଟ ଗୁଣ ଓ ଲକ୍ଷଣ ଯାହା Sarcasm ର ଗୁଣ ଓ ଲକ୍ଷଣ ତାହା । ଏହା ପ୍ରଧାନତଃ ବାକ୍‌ଚାତୁର୍ଯ୍ୟ ଉପରେ ନିର୍ଭରଶୀଳ । ଏହିଭଳି ହାସ୍ୟରସର ବିଭିନ୍ନ ବିଭାଗ ବିଶ୍ୱ ସାହିତ୍ୟରେ ପ୍ରଚଳିତ ହୋଇ ଆସୁଅଛି ।

ହାସ୍ୟରସ ମଣିଷକୁ ଆନନ୍ଦ ଓ ପ୍ରସାଦ ଦେଇଥାଏ । ଚିନ୍ତା, ଉଦ୍‌ବେଗ ଓ ଅବସାଦର ଭାର ଅପସାରଣ କରି ହୃଦୟକୁ ହାଲୁକା କରେ । ହାସ୍ୟରସକୁ କେହି କେହି ସ୍ୱାସ୍ଥ୍ୟପ୍ରଦ ବୋଲି କହିଥାନ୍ତି । ମାନସିକ କ୍ଷୟ ପୂରଣ ଦିଗରେ ହାସ୍ୟ ହେଉଛି ଏକମାତ୍ର ମହୌଷଧି । ଅତିରିକ୍ତ ଦୁଃଖ, ନୈରାଶ୍ୟ ଓ ଯନ୍ତ୍ରଣାରେ ମ୍ରିୟମାଣ ନହୋଇ ଦୁନିଆରେ ବଞ୍ଚିବା ପାଇଁ ହେଲେ ଅସୀମ ସାହସ ଓ ଧୈର୍ଯ୍ୟ ଦରକାର । ଏହି ଧୈର୍ଯ୍ୟ ହାସ୍ୟରସ ପ୍ରସାଦରୁ ମିଳିଥାଏ । ମନୋବୃତ୍ତିକ ସଜାଡ଼ିବା ଦିଗରେ ହାସ୍ୟରସ ଯଥେଷ୍ଟ ଉପାଦାନ ଯୋଗେଇଥାଏ । ତେଣୁ ଶାରୀରିକ ଓ ମାନସିକ ଦୃଷ୍ଟିରୁ ହାସ୍ୟରସ ଅପରିହାର୍ଯ୍ୟ । ତାହା ମଣିଷ ମନର ସମସ୍ତ ସଂକୀର୍ଣ୍ଣତା, କ୍ଳେଦ-ଗ୍ଳାନିକ ଦୂର କରି ହୃଦୟକୁ ଉଜ୍ଜ୍ୱଳ ଆଲୋକରେ ଆଲୋକିତ କରିବା ସଙ୍ଗେ ସଙ୍ଗେ ରସାପ୍ଲୁତ କରିଥାଏ । ଅତଏବ ଏହି ଦୃଷ୍ଟିରୁ ହାସ୍ୟରସର ଆବଶ୍ୟକତା ସାହିତ୍ୟ କ୍ଷେତ୍ରରେ ଯଥେଷ୍ଟ ଭାବେ ରହିଅଛି ।

# ଜୀବନୀ ସାହିତ୍ୟ

'Lives of great men all remind us
We can make our lives sublime
And departing, leave behind us
Footprints on the sands of time'.

—The Psalm of Life.

ଜୀବନ ଚରିତ ଓ ଆତ୍ମଚରିତ ଯୁବଶକ୍ତିକୁ ଯଥେଷ୍ଟ ପ୍ରେରଣା ଯୋଗେଇଥାଏ ଏବଂ ତରୁଣ ମନରେ ଯଥେଷ୍ଟ ପ୍ରଭାବ ପକାଇଥାଏ । ମହାପୁରୁଷଙ୍କ ଜୀବନୀ ପାଠ କଲେ ପାଠକ ମନରେ ତାହା କେବଳ ଚମକ ସୃଷ୍ଟି କରେ ନାହିଁ ବରଂ ସେହି ମହାପୁରୁଷଙ୍କ ବ୍ୟକ୍ତିତ୍ୱର ସାନ୍ନିଧ୍ୟ ପାଠକ ପ୍ରାପ୍ତ ଅନୁଭବ କରିଥାଏ । ଜୀବନୀ ସାହିତ୍ୟ ବିଶେଷଭାବେ ପାଠକ ଉପରେ ନୈତିକ ପ୍ରଭାବ ପକାଇଥାଏ । ତେଣୁ ଜୀବନୀ ସାହିତ୍ୟର ଯଥେଷ୍ଟ ମୂଲ୍ୟବୋଧ ରହିଅଛି ।

ଜୀବନୀ ସାହିତ୍ୟ ଏକ ସ୍ୱତନ୍ତ୍ର କଳା । ଏହା ଇତିହାସ ଓ ଉପନ୍ୟାସରେ ବର୍ଣ୍ଣିତ ଚରିତ୍ରମାନଙ୍କ ଚାରିତ୍ରିକ ବିଶ୍ଳେଷଣଠାରୁ ସ୍ୱତନ୍ତ୍ର । ଏଥିରେ ପାଠକ ମଣିଷର ଅନ୍ତର ପ୍ରକୃତିକୁ ଜାଣିପାରିଥାଏ । ଏହା ଅତି ଜୀବନ୍ତ ଓ ବାସ୍ତବ ।

ଯେଉଁ ବ୍ୟକ୍ତି ସମାଜରେ ନିଜର ବ୍ୟକ୍ତିଗତ ଜୀବନ ପ୍ରତିଷ୍ଠିତ କରିପାରିଛନ୍ତି କିମ୍ବା ଯେଉଁ ବ୍ୟକ୍ତି ଆମ ନିକଟରେ ଜନ୍ମଲାଭ କରି ପରିଶେଷରେ ଅତିମାନୁଷ (Superman) ସ୍ତରକୁ ଯାଇ ନିଜକୁ ମହାପୁରୁଷ ବା ମହାତ୍ମା ନାମରେ ପରିଚିତ ଅଥବା ଜଣେ ଅତି କୁଖ୍ୟାତ ବ୍ୟକ୍ତି ଯେ କି ସାମାଜିକ ଜୀବନକୁ କଳୁଷିତ କରିଛନ୍ତି ସେହି ସମସ୍ତ ବ୍ୟକ୍ତି-ବିଶେଷଙ୍କ ଜୀବନ ଚରିତ୍ର ଏବଂ ତାଙ୍କ ଜୀବନରେ ଘଟିଥିବା ସମସ୍ତ ବାସ୍ତବ

ଘଟଣା ଜାଣିବାପାଇଁ ସାଧାରଣତଃ ଆମ୍ଭେମାନେ ଆଗ୍ରହୀ ଥାଉ । ସେହି ବ୍ୟକ୍ତିବିଶେଷଙ୍କ ଜୀବନଯାତ୍ରା ପ୍ରଣାଳୀ, ଦୈନନ୍ଦିନ ଜୀବନର ଅନୁଭୂତି ପ୍ରଭୃତି ବିଭିନ୍ନ ବିଷୟ ସମ୍ପର୍କରେ ଆମ୍ଭମାନଙ୍କ ମନରେ ଯେଉଁ କୌତୂହଳ ସୃଷ୍ଟି ହୋଇଥାଏ ସେହି କୌତୂହଳକୁ ବିଶେଷ ପରିମାଣରେ ଚରିତାର୍ଥ କରେ ଜୀବନୀ ସାହିତ୍ୟ । ଜୀବନୀ ଇତିହାସ ନୁହେଁ, ଏହା ଇତିହାସର ଏକ ଶାଖା । ଜୀବନୀ ରଚୟିତାର ଜୀବନୀ ଲେଖିବାବେଳେ ଯଥେଷ୍ଟ କର୍ତ୍ତବ୍ୟ ରହିଛି । ଅତି ବିଶ୍ୱସ୍ତତା ଓ ଆନ୍ତରିକତା ଲେଖକର ଜୀବନୀ ରଚନାରେ ପ୍ରକାଶ ପାଇବା ଉଚିତ । ଜୀବନୀ ଲେଖିବାବେଳେ ଐତିହାସିକ ନିଷ୍ଠା ଯେତିକି ରହିବା ଆବଶ୍ୟକ ଅନ୍ୟ ଦିଗରେ ସେତିକି ସାର୍ଥକ ଅଙ୍କନ ଶିଳ୍ପ-କୌଶଳ ପ୍ରକାଶ ପାଇବା ଉଚିତ । ଜୀବନୀ ଲେଖକ ବାସ୍ତବିକ ଜଣେ ଅଙ୍କନ ଶିଳ୍ପୀ (Portrait Painter) ହେବା ଉଚିତ । ଅଙ୍କନ ଶିଳ୍ପୀ ପରି ଜୀବନୀ ଲେଖକ ଅତି ବାସ୍ତବ, ଜୀବନ୍ତ ପ୍ରତିଛବି ଆଖି ଆଗରେ ନଚେଇବା ଦରକାର । ଜୀବନୀ ଚରିତରେ ଯଦି ପ୍ରଗାଢ଼ ଐତିହାସିକ ନିଷ୍ଠା ପ୍ରତିଫଳିତ ହେବ ତାହାର ସାହିତ୍ୟିକ ମୂଲ୍ୟ ରହିନପାରେ । ଜୀବନୀ ଚରିତ ଐତିହାସିକ ନିଷ୍ଠା ସହିତ ସାହିତ୍ୟ ରସରେ ଯଦି ସମୃଦ୍ଧ ହୁଏ ତେବେ ତାହାର ସାହିତ୍ୟିକ ମୂଲ୍ୟ ପ୍ରକାଶ ପାଇଥାଏ । ଏହି ଧରଣର ଜୀବନୀ ରଚୟିତା ସାଧାରଣତଃ ସାହିତ୍ୟିକ । କିନ୍ତୁ ଅନ୍ୟ ଯେଉଁମାନେ ଜୀବନୀ ଲେଖନ୍ତି ସେମାନେ ଐତିହାସିକ ମୂଲ୍ୟ ପ୍ରତି ବିଶେଷ ଧ୍ୟାନ ଦେଇଥାନ୍ତି । ଜୀବନର ଘଟଣାବଳୀକୁ ଯଦି ସୁନ୍ଦର ଭାବେ ବର୍ଣ୍ଣନା କରାଯାଏ ତେବେ ଜୀବନୀ, ଉପନ୍ୟାସଠାରୁ ମଧ୍ୟ ରୋମାଞ୍ଚ ସୃଷ୍ଟି କରିବାରେ ବଳିଯିବ ।

ଆମ ଦେଶରେ ଜୀବନୀ ଗ୍ରନ୍ଥଗୁଡ଼ିକୁ ବ୍ୟକ୍ତିପୂଜାର ନାମାନ୍ତର କହିଲେ ଅତ୍ୟୁକ୍ତି ହେବନାହିଁ । ପୂର୍ବେ ଯେଉଁ ଜୀବନୀ ଚରିତ ସବୁ ଲେଖାଯାଉଥିଲା ସେଥିରେ ଅତିରଞ୍ଜିତ ଘଟଣା ଓ ବ୍ୟକ୍ତିବିଶେଷଙ୍କ ସମ୍ପର୍କରେ ଅଲୌକିକ, ଅସ୍ୱାଭାବିକ ଓ ଅବାସ୍ତବ ବର୍ଣ୍ଣନା ଲିପିବଦ୍ଧ ହୋଇଥିଲା । ସେଗୁଡ଼ିକ ବାସ୍ତବ ଜୀବନର ପରିପ୍ରେକ୍ଷୀରେ ଲେଖାଯାଉନଥିଲା । ତେଣୁ ସେହିଭଳି ଜୀବନ ଚରିତ ଆଜି ପାଠକ ଆଗରେ ଲୋକପ୍ରିୟ ନୁହେ । ଆଜି ଯେଉଁସବୁ ଜୀବନୀ ଓ ଆତ୍ମଜୀବନୀ ଲେଖାଯାଉଛି ତାହା ଆଜିର ସାମାଜିକ ଜୀବନର ପୃଷ୍ଠଭୂମି ଉପରେ ଲିଖିତ । ତେଣୁ ଅତି ବାସ୍ତବ ଓ ହୃଦୟଗ୍ରାହୀ ।

ଜୀବନୀ ଲେଖିବାବେଳେ ଲେଖକ ଅନେକ ସମୟରେ କେତେଗୁଡ଼ିଏ ଅସୁବିଧାର ମଧ୍ୟ ସମ୍ମୁଖୀନ ହୋଇଥାଏ । ପ୍ରଥମତଃ, କୌଣସି ମୃତ ବ୍ୟକ୍ତିର ଜୀବନୀ ଲେଖିବାବେଳେ ଜୀବନୀ ସମ୍ବନ୍ଧୀୟ ଯଥେଷ୍ଟ ତଥ୍ୟ ସଂଗ୍ରହ କରିବା ଲେଖକ ପକ୍ଷରେ ସମ୍ଭବ ହୋଇନଥାଏ । ଦ୍ୱିତୀୟତଃ, ମୃତ୍ୟୁ ପରେ କୌଣସି ବ୍ୟକ୍ତିର ଜୀବଦ୍ଦଶାରେ ଘଟିଥିବା ଘଟଣା ଭିତରୁ କେଉଁଟି ପ୍ରକାଶ୍ୟ ଯୋଗ୍ୟ ଓ କେଉଁଟି ଅପ୍ରକାଶ୍ୟ ଯୋଗ୍ୟ ତାହା ଲେଖକ ପକ୍ଷରେ ବିବେଚନାର ବିଷୟ ହୋଇଥାଏ । ଏବଂ ମୃତ ବ୍ୟକ୍ତିର ଦୋଷ ଦୁର୍ବଳତାକୁ ଗୋପନ କରି ରଖିବା ପାଇଁ ସେ ଚେଷ୍ଟା କରେ । ଫଳରେ ଅସ୍ୱାଭାବିକ ଆତ୍ମଗୋପନଦ୍ୱାରା ଜୀବନ ଚରିତ ଅସମ୍ପୂର୍ଣ୍ଣ ହୋଇଥାଏ । ତେଣୁ ଲେଖକ ମୃତ ବ୍ୟକ୍ତିର ଜୀବନୀ ସମ୍ବନ୍ଧୀୟ ତଥ୍ୟଗୁଡ଼ିକୁ ଏପରିଭାବେ ଗ୍ରହଣ ଓ ବର୍ଜନ କରିବା ଉଚିତ ଯାହାଫଳରେ ଅତି ସୁନ୍ଦରଭାବେ ପରିପୂର୍ଣ୍ଣ ଜୀବନ ଚରିତ ପ୍ରକାଶ ପାଇପାରିବ । ତୃତୀୟତଃ, ଜୀବନୀ ରଚୟିତାଙ୍କର ମାନବ ଚରିତ୍ର ସମ୍ବନ୍ଧରେ ଗଭୀର ଅନ୍ତର୍ଦୃଷ୍ଟି ଥିବା ବାଞ୍ଛନୀୟ । ସେ ଯେଉଁ ବ୍ୟକ୍ତିଙ୍କର ଜୀବନୀ ଲେଖନ୍ତି ସେହି ବ୍ୟକ୍ତିଙ୍କ ପ୍ରତି ଲେଖକଙ୍କ ଗଭୀର ଶ୍ରଦ୍ଧା, ଆନ୍ତରିକତା ଓ ସମ୍ବେଦନଶୀଳତା ଥିବା ନିତାନ୍ତ ଦରକାର । ଲେଖକଙ୍କ ପ୍ରତ୍ୟକ୍ଷ ଅନୁଭୂତି ଜୀବନ ଚରିତରେ ପ୍ରକାଶ ପାଇଲେ ଜୀବନୀ ଅତି ସରସ ଓ ଜୀବନ୍ତ ହୋଇଥାଏ । ପୂର୍ଣ୍ଣାଙ୍ଗ ଜୀବନର ଚିତ୍ର ଦେବା ଆଶାରେ ଜୀବନୀ ଲେଖକ ବହୁ କଷ୍ଟସ୍ୱୀକାର କରି ତଥ୍ୟ ସଂଗ୍ରହ କରିଥାନ୍ତି । ତେଣୁ ସମାଲୋଚକ ଜୀବନୀ ଲେଖକଙ୍କ ସମ୍ପର୍କରେ କହନ୍ତି—

"Set their teeth and marched down every corridor, surveyed every room, deliberated in every lobby and recess" in the hope of giving a perfect portrait of the person concerned.

ଜୀବନ ଚରିତରେ ବର୍ଣ୍ଣିତ କୌଣସି ମହାପୁରୁଷଙ୍କ ଜୀବନୀ ଯଦି ଆମ୍ଭମାନଙ୍କୁ ଆଶା, ଭରସା ଓ ସହାନୁଭୂତିରେ ଉଦ୍‌ବୁଦ୍ଧ କରିପାରେ ଏବଂ ଆମ୍ଭମାନଙ୍କ ମଧ୍ୟରେ ତଦନୁରୂପ ଭାବ-କଳ୍ପନାର ଅନୁପ୍ରେରଣା ସୃଷ୍ଟି କରିପାରେ ତେବେ ସେହି ଜୀବନୀ ଏକ ସାର୍ଥକ ସୃଷ୍ଟି ହିସାବରେ ବିବେଚିତ

ହୋଇଥାଏ । ଏହିଭଳି ସାର୍ଥକ ଜୀବନୀ ହିସାବରେ **Lewes** ଙ୍କ **'Life of Goethe', Boswell** 'ଙ୍କ **'Life of Dr. Johnson'** ବଙ୍ଗଳା ସାହିତ୍ୟରେ ନଗେନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ 'ରାମମୋହନ', ଚଣ୍ଡୀଚରଣ ବନ୍ଦୋପାଧ୍ୟାୟଙ୍କ 'ବିଦ୍ୟାସାଗର' ଏବଂ ସତ୍ୟେନ୍ଦ୍ରନାଥ ମଜୁମଦାରଙ୍କ 'ବିବେକାନନ୍ଦ ଚରିତ', ଓଡ଼ିଆ ସାହିତ୍ୟରେ ଏତେଦୂର ସାର୍ଥକ ଜୀବନୀ ପ୍ରକାଶ ପାଇନଥିଲେ ବି ବର୍ତ୍ତମାନ ସୁଦ୍ଧା ପ୍ରକାଶ ପାଇଥିବା ଦୁର୍ଗାଚରଣ ରାୟଙ୍କ 'ରାଧାନାଥ-ଜୀବନୀ', କାଳନ୍ଦୀଚରଣ ପାଣିଗ୍ରାହୀ ଓ ଅଧ୍ୟାପକ ଚିନ୍ତାମଣି ଦାଶଙ୍କ ଉତ୍କଳଗୌରବ ମଧୁସୂଦନଙ୍କ ସମ୍ପର୍କରେ ସଂକ୍ଷିପ୍ତ ଜୀବନୀ, କେଶବ ଚ ବେହେରଙ୍କ 'ଗଙ୍ଗାଧର ଜୀବନୀ', ଠାକୁର ଶ୍ରୀରାମଚନ୍ଦ୍ର ଦାଶଙ୍କ ଇଂରେଜୀ ରଚନା 'ପଣ୍ଡିତ ଗୋପବନ୍ଧୁ', ନବକିଶୋର ଦାସଙ୍କ 'କୁଳବୃଦ୍ଧ ମଧୁସୂଦନ' ଚିନ୍ତାମଣି ଦାଶଙ୍କ 'ଐତିହାସିକ କୃପାସିନ୍ଧୁ', ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ 'ଶତାବ୍ଦୀର ସୂର୍ଯ୍ୟ', ତରୁଣ ଲେଖକ ସୂର୍ଯ୍ୟନାରାୟଣ ଦାଶଙ୍କ 'ଯୁଗଜନକ ମହାତ୍ମାଗାନ୍ଧୀ' ଏବଂ 'ଯୁଗ ସ୍ରଷ୍ଟା ନେହରୁ' ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ସଂକ୍ଷିପ୍ତରେ ବହୁ ଜୀବନୀମାଳା ଓଡ଼ିଆ ସାହିତ୍ୟରେ ପ୍ରକାଶ ପାଇଛି ।

**ଆତ୍ମଜୀବନୀ** (Autobiography): – ଜୀବନୀ ବ୍ୟତୀତ ଆତ୍ମଜୀବନୀ ଜୀବନୀ ସାହିତ୍ୟର ଅନ୍ୟ ଏକ ଅଙ୍ଗ । ଏହା ଆତ୍ମକୃତ ଏବଂ ଲେଖକ ସ୍ୱୟଂ ଗ୍ରନ୍ଥର ନାୟକ । ତେଣୁ ଆତ୍ମଜୀବନୀ ଲେଖକ ଯଥେଷ୍ଟ ଭାବେ ସଂଯତତା ଅବଲମ୍ବନ କରିଥାଏ । ଆତ୍ମ-ଚରିତରେ ଲେଖକ ଅତିଶୟୋକ୍ତି, ଅସାମାନ୍ୟ ବର୍ଣ୍ଣନା ଏବଂ ଅସତ୍ୟ କଥନକୁ ନିର୍ମମ ଭାବେ ପରିହାର କରିବା ଉଚିତ । ଆତ୍ମଚରିତ ବ୍ୟକ୍ତି ଜୀବନର ସଠିକ ବୃତ୍ତାନ୍ତ । ସେଥିରେ ଜୀବନର ସମସ୍ତ ଅଭିଜ୍ଞତାର କଥାକୁ ଲେଖକ ନିଷ୍କପଟ ହୃଦୟରେ ପ୍ରକାଶ କରିବା ଉଚିତ । ଜୀବନର ସତ୍ୟ ଅତି ସୁନ୍ଦର ଭାବେ ପ୍ରକାଶ ପାଇପାରିଲେ ଆତ୍ମଜୀବନୀ ଅନବଦ୍ୟ ସାହିତ୍ୟରୂପେ ପରିଚୟ ପାଇଥାଏ । ଆତ୍ମଜୀବନୀ ଲେଖକ ପକ୍ଷରେ ଅତିମାତ୍ରାରେ ନମ୍ରତା ଓ ଆତ୍ମ-ସଚେତନତା ଉଭୟ କ୍ଷତିକାରକ । କିନ୍ତୁ ଲେଖକର ବୈଶିଷ୍ଟ୍ୟ ଗୁଣ ହେଲା ନିଜ ସମ୍ବନ୍ଧରେ ତାଙ୍କର ଉପଲବ୍ଧି । ଅର୍ଥାତ୍ ଅନେକ ସମୟରେ ଦେଖାଯାଇଥାଏ ଯେ ମଣିଷ କଷ୍ଟସ୍ୱୀକାର କରି କେତେ ବଡ଼ କଠିନ କାର୍ଯ୍ୟ କରିଥାଏ ଏବଂ ବେଳେବେଳେ ନିଜ ଜୀବନକୁ ଉତ୍ସର୍ଗ କରି

ଅଥାଥ୍ ସମ୍ପ୍ରେକ କରିଥାଏ କିନ୍ତୁ ଏହା ମୂଳରେ ଥାଇ ଯେଉଁ ଶକ୍ତି ରହିଛି ସେହି ଶକ୍ତିର ରହସ୍ୟ କଣ ? ତାହା ସେ ଜାଣିପାରି ନଥାଏ । ନିଜର ଏହି ବିଚକ୍ଷଣ ଶକ୍ତିକୁ ଭାବି ବସିଲେ ସେ ଆଶ୍ଚର୍ଯ୍ୟ ହୁଏ । ଏହାର କାରଣ ବୋଧଶକ୍ତିର ଅଭାବ । ନିଜ ଶକ୍ତିର ସନ୍ଧାନ ନିଜେ ଲେଖକ ପାଇ ନପାରେ ତେବେ ସେ ଅନ୍ୟକୁ ଆକର୍ଷଣ କରିବ କିପରି ? ତେଣୁ ଏହି ବୋଧଶକ୍ତି, ଦିବ୍ୟଦୃଷ୍ଟି ଓ ରସ ସୃଷ୍ଟି ଦ୍ୱାରା ଯେ ଅନ୍ୟ ଆଗରେ ନିଜକୁ ଉତ୍ତମରୂପେ ପ୍ରକାଶ କରିପାରେ ସେ ହେଉଛି ଯଥାର୍ଥରେ ସାର୍ଥକ ଆତ୍ମଜୀବନୀ ରଚୟିତା ।

ଜୀବନୀ ଅପେକ୍ଷା ଆତ୍ମଜୀବନୀ ଅଧିକ ଲୋକପ୍ରିୟ ଓ ସୁଖପାଠ୍ୟ । ଏହା ଅଧିକ ଜୀବନ୍ତ ଓ ରସବନ୍ତ । ଏଥିରେ ବାସ୍ତବ ଜୀବନର ଗଭୀର ଅନୁଭୂତି ସଞ୍ଚିତ ପ୍ରାଣପ୍ରାଚୁର୍ଯ୍ୟ ପୁଞ୍ଜୀଭୂତ ହୋଇ ରହିଥାଏ । ବିଖ୍ୟାତ କବି Milton ଶ୍ରେଷ୍ଠ ବହିର ସଂଜ୍ଞା ନିରୂପଣ କରିବାକୁ ଯାଇ ଯାହା କହିଛନ୍ତି ବାସ୍ତବିକ ତାହା ଏହି ଆତ୍ମଜୀବନୀ ପ୍ରତି ପ୍ରଯୁଜ୍ୟ । Milton କହିଛନ୍ତି —

> "A good book is the precious life-blood of a master spirit, embalmed and treasured upon purpose to a life beyond life."

ଜୀବନୀ ଲେଖକ ବେଳେବେଳେ ପ୍ରକୃତ ସତ୍ୟ ପ୍ରକାଶ କରିବା ପାଇଁ ଚେଷ୍ଟା କରିଥାଏ । ତେଣୁ [illegible] ମନୀଷୀମାନେ ଜୀବନର ପ୍ରକୃତ ସତ୍ୟ ଓ ବାସ୍ତବ ଘଟଣା ପ୍ରକାଶ କରିବା ପାଇଁ ନିଜେ ଆତ୍ମଜୀବନୀ ଲେଖିଥାନ୍ତି । ଅନ୍ୟ କେତେକ ଲେଖକ ଆତ୍ମଜୀବନୀ ନ ଲେଖି ଜୀବନର ଦୈନନ୍ଦିନ ଘଟଣାକୁ Diary ବା ଆତ୍ମପଞ୍ଜିରେ ଲିପିବଦ୍ଧ କରିଥାନ୍ତି ଏବଂ ସ୍ମୃତି କଥା Memoir ରଚନା କରିଥାନ୍ତି । ଏଥିରେ ଲେଖକର ବ୍ୟକ୍ତିଗତ ଜୀବନର ଚିତ୍ର ଅଧିକ ପରିସ୍ଫୁଟ ହୋଇଥାଏ ।

ବିଶ୍ୱ ସାହିତ୍ୟରେ ଦେଖାଦେଇଥିବା କେତୋଟି ଉଲ୍ଲେଖଯୋଗ୍ୟ ଓ ଉପାଦେୟ ଆତ୍ମଜୀବନୀ ମଧ୍ୟରେ ଗାନ୍ଧୀଜୀଙ୍କର 'My Experiments with Truth', ଜବାହରଲାଲ ନେହେରୁଙ୍କର 'ଆତ୍ମଜୀବନୀ'

St. Augustinsଙ୍କ 'Cofessions', Gibbonଙ୍କ Autobiography, ବିଶ୍ୱକବି ରବୀନ୍ଦ୍ରନାଥଙ୍କ 'ଜୀବନ ସ୍ମୃତି' ଏବଂ ଫକୀରମୋହନଙ୍କ 'ଆତ୍ମଚରିତ'କୁ ନିଆଯାଇପାରେ । ଏହା ବ୍ୟତୀତ ଓଡ଼ିଆ ସାହିତ୍ୟରେ ସାର୍ଥକ ଆତ୍ମଜୀବନୀ ହିସାବରେ ପଣ୍ଡିତ ଗୋଦାବରୀଶଙ୍କ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ଏବଂ ପଣ୍ଡିତ ନୀଳକଣ୍ଠଙ୍କ ଆତ୍ମଜୀବନୀ ଗୌରବମୟ ପରଂପରା ନେଇ ପ୍ରକାଶ ପାଇଛି । ଏହି ଦୁଇଜଣ ମହାପୁରୁଷଙ୍କ ଆତ୍ମଜୀବନୀ ବିଗତ ଅର୍ଦ୍ଧଶତାବ୍ଦୀର ଓଡ଼ିଶାର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଜୀବନର ପୃଷ୍ଠଭୂମି ଉପରେ ଲିଖିତ । ଏହି ଦୁଇଟି ଆତ୍ମଜୀବନୀ ପାଠ କଲେ ଜଣାଯାଏ ଓଡ଼ିଶା ପ୍ରଦେଶ, ଓଡ଼ିଆ ଜନତା ଏବଂ ଓଡ଼ିଆ ଭାଷା ସହିତ ଅଙ୍ଗାଙ୍ଗୀ ଭାବରେ ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ ନୀଳକଣ୍ଠ କିଭଳି ନିଜକୁ ବିଜଡ଼ିତ କରିଥିଲେ । ଫକୀରମୋହନ, ଗୋଦାବରୀଶ ଓ ନୀଳକଣ୍ଠଙ୍କ ଆତ୍ମଜୀବନୀରେ ସୁନ୍ଦର ଲେଖା ପରିପାଟୀ ଏବଂ କାବ୍ୟିକ ଶୈଳୀ ଦେଖିବାକୁ ମିଳେ । ତେଣୁ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ତାକୁ ବିଶିଷ୍ଟ ସ୍ଥାନ ଦିଆଯାଇଛି ।

ଓଡ଼ିଶାର ଆଜି ତିନିଜଣ ବିଶିଷ୍ଟ ବ୍ୟକ୍ତି ବର୍ତ୍ତମାନ ଆତ୍ମଜୀବନୀ ଲେଖିବା ଆରମ୍ଭ କରିଛନ୍ତି । ସେଗୁଡ଼ିକ ଧାରାବାହିକ ବିଭିନ୍ନ ପତ୍ରପତ୍ରିକାର ପ୍ରକାଶ ପାଇ ଆସୁଛି । ଠାକୁର ପ୍ରାଣକୃଷ୍ଣ ପରିଜାଙ୍କ 'ଅକିଞ୍ଚନର ଜୀବନ ସ୍ମୃତି', ଶ୍ରୀ ମାଳମଣି ସେନାପତିଙ୍କ 'ମୋ' କାହାଣୀ' କ୍ରମାଗତ ଭାବେ 'ପୌରୁଷ' ପତ୍ରିକାରେ ପ୍ରକାଶ ପାଉଛି । ସାହିତ୍ୟିକ କାଳନ୍ଦୀଚରଣଙ୍କ 'ଅଙ୍ଗେ ଯାହା ନିଭାଇଛି' ଆଗରୁ 'କଳନା' ପତ୍ରିକାରେ ପ୍ରକାଶ ପାଇ ଆସୁଥିଲା ବର୍ତ୍ତମାନ 'ଡଗର' ପତ୍ରିକାରେ ପ୍ରକାଶ ପାଇ ଆସୁଛି । ଜୀବନର ଗମ୍ଭୀର ଅନୁଭୂତି ଓ ବହୁ ରୋମାଞ୍ଚକର ଘଟଣା ନେଇ ଏହିସବୁ ଆତ୍ମଜୀବନୀ ପ୍ରକାଶ ପାଉଛି । ତେଣୁ ଏଗୁଡ଼ିକ ପାଠକ ମହଲରେ ଅତି ହୃଦୟଗ୍ରାହୀ ହୋଇପାରିଛି ।

ଜୀବନୀ ଲେଖିବା ଦିଗରେ ଆମର ଓଡ଼ିଶା ବହୁ ପଛରେ ପଡ଼ିଥିଲା । କିନ୍ତୁ ଆନନ୍ଦର କଥା, ବର୍ତ୍ତମାନ ଜୀବନୀ ଲେଖିବା ପ୍ରବୃତ୍ତି ଲେଖକମାନଙ୍କ ମନରେ ଖେଳୁଛି । ଆଜି ଓଡ଼ିଶାର ଲେଖକମାନେ ଏ ଦିଗରେ ପ୍ରବଳ

ଉଦ୍ୟମ ଆରମ୍ଭ କରିଛନ୍ତି । ଏହା ଏକ ଶୁଭ ସୂଚନା । କିନ୍ତୁ ଦୁଃଖର କଥା, ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ବହୁ ଜନନାୟକ, ସାହିତ୍ୟିକ ଓ ଶିକ୍ଷାବିତ୍‌ଙ୍କର ଜୀବନୀ ଲେଖା ଯାଇପାରି ନାହିଁ । ଏପରିକି ବର୍ତ୍ତମାନ ସୁଦ୍ଧା ଉତ୍କଳମଣି ଗୋପବନ୍ଧୁ ଓ କୁଳବୃଦ୍ଧ ମଧୁସୂଦନଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ଲେଖା ଯାଇପାରି ନାହିଁ । କିନ୍ତୁ ଯାହାହେଉ ଏବେ ସୁଖର କଥା ବର୍ତ୍ତମାନ ବିଶିଷ୍ଟ ସମାଜସେବୀ, ସାହିତ୍ୟିକ ଓ ରାଷ୍ଟ୍ରନାୟକଙ୍କ ଜୀବନୀ ଲେଖିବାର ଉଦ୍ୟମ ହେଉଛି । ଏକ ସୁଚିନ୍ତିତ ଯୋଜନା ବି ପ୍ରସ୍ତୁତ ହୋଇଛି । ଏ ଦିଗରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଉଦ୍ୟମ ଅବଶ୍ୟ ପ୍ରଶଂସନୀୟ ।

ଜୀବନୀ ସାହିତ୍ୟ ଏକ ଉପାଦେୟ ସାହିତ୍ୟ । ଏହାର ନୈତିକ ପ୍ରଭାବ ପରବର୍ତ୍ତୀ ବଂଶଧରଙ୍କ ଉପରେ ଯଥେଷ୍ଟ ଭାବେ ପଡ଼ିଥାଏ ଏବଂ ଯଥେଷ୍ଟ ପ୍ରେରଣା ଯୋଗାଇଥାଏ. ନିଜର ବ୍ୟକ୍ତିଗତ ଜୀବନର ବିକାଶ ଓ ପ୍ରତିଷ୍ଠା ଦିଗରେ ।



# ଟ୍ରେଜେଡ଼ି ଓ କମେଡ଼ି

ଟ୍ରେଜେଡ଼ି ଓ କମେଡ଼ି ଶବ୍ଦ ଆଜି ଅତି ଲୋକପ୍ରିୟ । ସାଧାରଣ କଥା କିମ୍ବା ସାଧାରଣ ଘଟଣାରେ ଲୋକମୁଖରେ ଏହି ଶବ୍ଦ ବହୁବାର ଉଚ୍ଚାରିତ ହେବାର ଆଜି ଶୁଣାଯାଏ । ଜୀବନ ଯାତ୍ରାପଥରେ କେତେବେଳେ ଟିକିଏ ଧକ୍କା ବାଜିଗଲେ କିମ୍ବା ନିଜର ବାସନା ଚରିତାର୍ଥ ନହେଲେ ସ୍ୱତଃ ଆମ ମୁହଁରୁ ବାହାରି ପଡେ—'ମୋ ଆଜି ଟ୍ରେଜେଡି ହୋଇଗଲା' । କିନ୍ତୁ ଯେତେବେଳେ ମଣିଷ ତାର ଆଶା, ଆକାଂକ୍ଷା ପୂରଣ କରି ନିଜର ବାସନାକୁ ଚରିତାର୍ଥ କରି ଆନେଇ ଗୃହଲ ସେତେବେଳେ ସେ ଅନୁଭବ କରେ ଜୀବନଟା କମେଡି । ଟ୍ରେଜେଡି ଓ କମେଡି ସର୍ବେ ଯେମିତି ଜୀବନ-ବୋଧର ଦୁଇଟି ଧାରା । ଗୋଟିଏ ସୂତ୍ରରେ ପରସ୍ପର ବନ୍ଧା । ଜୀବନରେ କେତେବେଳେ ହେଲେ ଅବିମିଶ୍ର ସୁଖ ଓ ଅବିମିଶ୍ର ଦୁଃଖ ଦେଖାଯାଇ ନଥାଏ । ଅଶ୍ରୁର ଅନ୍ତରାଳରେ ହସର ସୂକ୍ଷ୍ମ ରେଖା ସର୍ବଦା ବିଦ୍ୟମାନ । ତେଣୁ ସ୍ରଷ୍ଟାର ଅପୂର୍ବ ସୃଷ୍ଟିରେ ଜୀବନର ପଦେ ପଦେ ଟ୍ରେଜେଡ଼ି ଓ କମେଡ଼ି ଅନୁଭୂତ ।

ଟ୍ରେଜେଡ଼ି ଏକ ଗ୍ରୀକ୍ ଶବ୍ଦ; କିନ୍ତୁ ତାହାର ପ୍ରତିଶବ୍ଦ ହେଲା ବିୟୋଗାନ୍ତ ବା ଦୁଃଖାନ୍ତ । ଏହା ଅତ୍ୟନ୍ତ ବ୍ୟାପକ ଅର୍ଥରେ ବ୍ୟବହୃତ ହୋଇ ଅଛି । ଗ୍ରୀକ୍ ଟ୍ରେଜେଡିର ଅଭିଧାନଗତ ଅର୍ଥ 'Goat Song'. । ଆରିଷ୍ଟଟଲ୍‌ଙ୍କ ମତରେ ଡାଓନିସାସ୍ ( Dionysus ) ଦେବତାଙ୍କ ଉଦ୍ଦେଶ୍ୟରେ ଯେତେବେଳେ ଗ୍ରୀକ୍ ଦେଶରେ ଛେଳି ବଳି ଦିଆଯାଉଥିଲା ସେତେବେଳେ ସମବେତ ସଙ୍ଗୀତ ବୋଲା ଯାଉଥିଲା; ଏବଂ ଯେଉଁମାନେ ଏହି କରୁଣ ସଙ୍ଗୀତ ଗାନ କରୁଥିଲେ ସେହିମାନେ ଛାଗଳ ଚର୍ମର ପୋଷାକ ପରିଧାନ କରି ନାଚ ନାଚି ଦେବତାଙ୍କ ନିକଟକୁ ଯାଉଥିଲେ । ଏହି କରୁଣ ସଙ୍ଗୀତ ପଦ୍ଧତି କ୍ରମଶଃ ନାଟକର କାହାଣୀଯୁକ୍ତ ହୋଇ ଟ୍ରେଜେଡ଼ି ନାଟକର

ସୂତ୍ରପାତ ହେଲା ଏବଂ ପରେ ପରେ ଉଚ୍ଚକୋଟୀର ଟ୍ରେଜେଡ଼ି ନାଟକର ବିକାଶ ଲାଭକଲା ଗ୍ରୀକ୍ ସାହିତ୍ୟରେ । ଏସ୍କିଲସ, ସଫୋକ୍ଲସ୍ ପ୍ରଭୃତି ନାଟ୍ୟକାରଗଣ ପ୍ରଥମେ ଶ୍ରେଷ୍ଠ ଟ୍ରେଜେଡ଼ି ରଚନା କରିଥିଲେ ।

ଆତ୍ମଦ୍ୱନ୍ଦରେ ପରାଭୂତ ବା ଅଭିଭୂତ ମାନବ ଜୀବନର କରୁଣ କାହାଣୀ ସାଧାରଣତଃ ଟ୍ରେଜେଡ଼ି ନାମରେ ପରିଚିତ । ସେକ୍ସପିୟରଙ୍କ ମତରେ କୌଣସି ଖ୍ୟାତିସମ୍ପନ୍ନ, ବିଶିଷ୍ଟ ଓ ଉଚ୍ଚପଦସ୍ଥ ବ୍ୟକ୍ତିର ପତନ ଦେଖାଗଲେ ତାହା ଟ୍ରେଜେଡ଼ି ହୋଇଥାଏ । ଏହି ଧରଣର ନାଟକରେ ନାୟକର ବ୍ୟକ୍ତିଗତ ଦୁର୍ବଳତା କିମ୍ବା ସାମାନ୍ୟ ଭୁଲଭ୍ରାନ୍ତି ଜୀବନକୁ ଦୁଃଖମୟ କରିଥାଏ ଏବଂ କେତେବେଳେ ଦୈବ କିମ୍ବା ଅଦୃଷ୍ଟଶକ୍ତି ତାକୁ ସର୍ବନାଶ କରିଥାଏ । ନାଟ୍ୟକାର ନାୟକ ଜୀବନର ଏହି ନିଦାରୁଣ ବେଦନାକୁ ରୂପାୟିତ କରିଥାଏ ନାଟକରେ । ଏହିଭଳି ଟ୍ରେଜେଡ଼ି ବା ଦୁଃଖାନ୍ତ ନାଟକରେ ନାୟକର ଗଭୀର ଅନ୍ତର୍ଦ୍ୱନ୍ଦ ଓ ବହିର୍ଦ୍ୱନ୍ଦ ଦେଖିବାକୁ ମିଳେ । ଆପଣା ସଙ୍ଗେ ଆପଣାର ଦ୍ୱନ୍ଦକୁ ଅନ୍ତର୍ଦ୍ୱନ୍ଦ ବା Internal conflict ଏବଂ ତାହାରର ଘଟଣା ସହିତ ନିଜର ଦ୍ୱନ୍ଦକୁ External conflict କୁହାଯାଇଥାଏ । ବଙ୍କିମଚନ୍ଦ୍ରଙ୍କ ଭାଷାରେ 'ଅନ୍ତଃ ପ୍ରକୃତିର ଘାତପ୍ରତିଘାତ ଚିତ୍ରିତ କରିବା ନାଟକର ପ୍ରଧାନ ଉଦ୍ଦେଶ୍ୟ' । ସୁତରାଂ ରଙ୍ଗମଞ୍ଚରେ ନାୟକ ଓ ନାୟିକାର ଗତିଶୀଳ ଜୀବନ କାହାଣୀର ଦୃଶ୍ୟ ପରମ୍ପର ଉପସ୍ଥାପିତ କରି, ଦର୍ଶକର ହୃଦୟରେ ଭୀତି ଓ ସହାନୁଭୂତି ପ୍ରକାଶ କରାଇ ତାହାର ମନରେ କରୁଣ ରସର ଆନନ୍ଦ ସୃଷ୍ଟି କରିବା ଟ୍ରେଜେଡିର ଚରମ ଉଦ୍ଦେଶ୍ୟ । ତେଣୁ Aristotle ଯଥାର୍ଥରେ ଟ୍ରେଜେଡିର ସଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ କହନ୍ତି—

> Tragedy is an imitation of an action that is serious, complete, and of a certain magnitude; in language embellished with each kind of artistic ornament, the several kinds being found in separate parts of the play; in the form of action, not of narrative; through pity and fear effecting the proper purgation of these emotions. ★

★ Aristotle's Poetics.

ଏଥିରୁ ଜଣାପଡ଼େ ଟ୍ରେଜେଡ଼ି ଜୀବନର କ୍ରିୟାଶୀଳ ରୂପ । ଘାତ ପ୍ରତିଘାତ ଦେଇ ଏହି 'ରୂପ' ପ୍ରକାଶ ପାଇଥାଏ । ଟ୍ରେଜେଡ଼ି ସର୍ବଦା ଘଟଣାତ୍ମକ, ବର୍ଣ୍ଣନାତ୍ମକ ନୁହେଁ । ଟ୍ରେଜେଡ଼ିର ରସ କରୁଣ ହେଲେ ବି ଦର୍ଶକ ମନରେ ଆନନ୍ଦ ସଞ୍ଚାର କରିବା ଏହାର ଉଦ୍ଦେଶ୍ୟ । ଏହି ଆନନ୍ଦ ସୂକ୍ଷ୍ମ ଏବଂ ଗମ୍ଭୀର । ଯୁଗ ଯୁଗ ଧରି ହୃଦୟବାନ୍ ଲୋକେ ନିଜ ଚିତ୍ତର ଅନୁଭୂତିଦ୍ୱାରା କରୁଣ ରସ କମ୍ବା ବେଦନାବୋଧକୁ ଆନନ୍ଦର ସହିତ ଆସ୍ୱାଦନ କରି ଆସିଛନ୍ତି । ତେଣୁ Abercrombie ସ୍ପଷ୍ଟ ଭାବେ କହିଛନ୍ତି— Tragedy satisfies us even in the moment of distressing. ଚରମ ବେଦନାର ମୁହୂର୍ତ୍ତରେ ଟ୍ରେଜେଡ଼ି ଆମମାନଙ୍କ ମନରେ ଆନନ୍ଦ ସଞ୍ଚାର କରେ ।

Aristotle ଏହି 'ଆନନ୍ଦ'କୁ Cathersis ବା ଭାବମୋକ୍ଷଣ ନାମରେ ନାମିତ କରିଅଛନ୍ତି । ତାଙ୍କ ମତରେ—

> "Tragedy's function is to purge away our excess emotions."

ଅଧ୍ୟାପକ ବ୍ରଜେନ୍ଦ୍ର ଚନ୍ଦ୍ର ଭଟ୍ଟାଚାର୍ଯ୍ୟ ତାଙ୍କ 'ସାହିତ୍ୟ ଓ ପାଠକ' ବହିରେ ଉଲ୍ଲେଖ କରିଛନ୍ତି— "କୌଣସି ଦୁରାରୋଗ୍ୟ ବ୍ୟାଧି ଦେହରେ ବିଷ ପ୍ରବେଶ କରାଇ ଯେପରି ବିଷ ଦୂର କରାଯାଇଥାଏ ସେହିଭଳି ସାମାନ୍ୟ ପରିମାଣରେ ବାହାରର କରୁଣା ଓ ଭୀତିକୁ ଦେହ ମଧ୍ୟରେ ପ୍ରବେଶ କରାଇ ଅନ୍ତରର ଗ୍ଲାନି ପରିଶୋଧିତ କରିଥାଏ ଟ୍ରେଜେଡ଼ି । ଏହି ପରିଶୋଧନ ହିଁ ଭାବମୋକ୍ଷଣ । ତେଣୁ ଅନ୍ତରର ଅତିରିକ୍ତ ଭାବଗୁଡ଼ିକୁ ସଂହତ କରି ଜୀବନର ଦୁଃଖ, ବେଦନା ଓ ମାଳିନ୍ୟ ମଧ୍ୟରୁ ଆନନ୍ଦର ଅନିର୍ବାଣ ବାଣୀ ବହନ କରି ଜୀବନର ସାର୍ଥକ ମୂଲ୍ୟାୟନ କରିବା ଟ୍ରେଜେଡ଼ିର ମୂଳ ଉଦ୍ଦେଶ୍ୟ ।"

ପ୍ରାଚୀନ ଗ୍ରୀକ୍ ନାଟକଠାରୁ ଆରମ୍ଭ କରି ସେକ୍ସପିୟରଙ୍କ ନାଟକ ଯାଏଁ ମୃତ୍ୟୁ ହିଁ ଟ୍ରେଜେଡ଼ିର ସ୍ୱାଭାବିକ ପରିଣତି ଥିଲା । ଗ୍ରୀକ୍ ନାଟକରେ ବହିର୍ଦ୍ୱନ୍ଦ୍ୱ ବିଶେଷଭାବେ ପ୍ରକାଶ ପାଇଥିଲା, କିନ୍ତୁ ସେକ୍ସପିୟରଙ୍କ ନାଟକ

(Tragedy) ରେ ଅନ୍ତର୍ଦ୍ୱନ୍ଦ୍ୱ ସୁନ୍ଦର ଭାବେ ପ୍ରକାଶ ପାଇଛି । ଚରିତ୍ରଗୁଡ଼ିକର ଅନ୍ତର୍ଦ୍ୱନ୍ଦ୍ୱ ସେକ୍ସପିୟରଙ୍କ ନାଟକଗୁଡ଼ିକୁ ବିୟୋଗାନ୍ତ ବା ଦୁଃଖାନ୍ତ ପରିଣତି ଆଡ଼କୁ ଟାଣିନେଇଛି । ଟ୍ରେଜେଡ଼ିର ନୂତନ ସ୍ୱରୂପ ଧରା ଦେଲା ପ୍ରଥମେ ସେକ୍ସପିୟରଙ୍କ ହାତରେ । ତେଣୁ ସେକ୍ସପିୟରଙ୍କ ଟ୍ରେଜେଡି ସମ୍ପର୍କରେ ଆଲୋଚନା କରିବାକୁ ଯାଇ ବିଖ୍ୟାତ ନାଟ୍ୟକାର ଓ ସମାଲୋଚକ Nicoll କହିଛନ୍ତି—

"The real tragedy lies in the mind of Hamlet himself. The inward conflict is not the conflict of Shakespeare's heroes. There is a struggle here, not between love and honour, not between two thoughts or two emotions, but between the conscious and the sub-conscious mind, between humanties and the ties of the soul." ★

ଏହି ପରିପ୍ରେକ୍ଷୀରେ ସେକ୍ସପିୟରଙ୍କ ଟ୍ରେଜେଡ଼ି ବିଶ୍ଳେଷଣ କଲାବେଳେ ଅନ୍ୟ ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ମ୍ୟାକ୍‌ବେଥ୍ ସେକ୍ସପିୟର ନାଟକର ଏକ ବଳିଷ୍ଠ ଚରିତ୍ର । ତାଙ୍କର ଯଶ ଓ ଗୌରବ ଅଦ୍ୱିତୀୟ । କିନ୍ତୁ ମ୍ୟାକ୍‌ବେଥ୍‌ଙ୍କ ଜୀବନରେ ଶେଷରେ ଶୋଚନୀୟ ପତନ ଦେଖାଦେଇଛି । ଏହି ପତନ ପାଇଁ ଦାୟୀ କିଏ ? ତାଙ୍କର ସ୍ତ୍ରୀ ? ନା ଡାକିନୀର ଭବିଷ୍ୟତ ବାଣୀ ? କି ତାଙ୍କର ଦୁର୍ବାର ପ୍ରବୃତ୍ତି ? କିଏ ଦାୟୀ ତେବେ ? ଏମାନେ କେହି ମୁଖ୍ୟତଃ ଦାୟୀ ନୁହନ୍ତି ବରଂ ଦାୟୀ ତାଙ୍କର ଚରିତ୍ର । ଚରିତ୍ର ମଧ୍ୟରେ ତାଙ୍କର ଯେଉଁ ଉଚ୍ଚାକାଂକ୍ଷା, କୁସଂସ୍କାର ଓ ଡାକିନୀର ଭବିଷ୍ୟତ ବାଣୀ ଉପରେ ଆସ୍ଥା ସ୍ଥାପନ କରିବାରେ ଯେଉଁ ଅନ୍ଧବିଶ୍ୱାସ ଏହା ହିଁ ତାଙ୍କ ଜୀବନରେ ଟ୍ରେଜେଡିର ମୂଳ କାରଣ । ଏହା

---

☆ An Introduction to Dramatic Theory by Allardyce Nicoll.

ଅତି ସୁନ୍ଦର ଭାବେ ପ୍ରକାଶ ପାଇଛି ସଚେତନ ଓ ଅବଚେତନ ମନର ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ । ଏହି ଦୃଷ୍ଟିରୁ ବିୟୋଗାନ୍ତକ ନାଟକର ନାୟକ (Hero) ସମ୍ପର୍କରେ Aristotle କହିଛନ୍ତି —

> "He falls from a position of the lofty emminence and the disaster that wrecks his life may be traced not to deliberate wickedness but to so great error of frailty."

Aristotleଙ୍କ ମତରେ ମ୍ୟାକ୍‌ବେଥ୍ ହିଁ ଯଥାର୍ଥରେ ଟ୍ରେଜିକ୍ ହିରୋ । କିନ୍ତୁ 'ରୋମିଓ-ଜୁଲିଏଟ୍' ନାଟକର ହିରୋ ରୋମିଓ ତାଙ୍କ ମତରେ ଟ୍ରେଜେଡ଼ିର ସାର୍ଥକ ହିରୋ ନୁହନ୍ତି । ବିଶିଷ୍ଟ ସମାଲୋଚକ Nicoll ଟ୍ରେଜିକ୍ ହିରୋ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ସେମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଛନ୍ତି । ତାଙ୍କ ଦୃଷ୍ଟିରେ ରୋମିଓ ଜଣେ 'Flawless Hero'.

> "In 'Romeo and Juliet' Romeo is pure and passionate. He is nobler than his companions. He is always an essentially good; yet he comes to ruin. The reason for his destructions lie in outward circumstances. Fate destroys the promise of love. This type of Hero as Aristotle saw, was not generally suitable for tragedy."
>
> —An Introduction to Dramatic Theory.

କେତେକ ନାଟକରେ ନାୟକର ଇଚ୍ଛା କିମ୍ବା ଆଦର୍ଶର ସଂଘର୍ଷ ନାଟକର ପରିଣତିକୁ ଦୁଃଖାନ୍ତ କରିଥାଏ । କାରଣ ନାୟକର ଇଚ୍ଛା ବା ଆଦର୍ଶର ଦୃଢ଼ତା ଜୀବନର ଘାତ ପ୍ରତିଘାତ ଭିତରେ ଟଳିଯାଇଥାଏ । ଅନ୍ୟ କେତେକ ଟ୍ରେଜେଡ଼ିରେ ଦୁଇଟି ନାୟକ Twin heroର ଭୂମିକା ଦେଖିବାକୁ ମିଳେ । ଅଧ୍ୟାପକ Nicoll ଏହି ଭୂମିକା ପ୍ରତି ଗୁରୁତ୍ୱ ଆରୋପ କରି କହିଛନ୍ତି—

"In Elizabathen period, there is not merely one hero; but two, and the tragic emotion arises out of the clash or conflict of the personalities. Othello himself does absolutely nothing. It is Iago who drives the plot forward and attracts all the attention of the play."

ତେଣୁ 'ଅଥେଲୋ' ଓ 'ଇଆଗୋ' ଉଭୟ ନାୟକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଉଭୟଙ୍କୁ ଟ୍ରେଜେଡ଼ିର ଶ୍ରେଷ୍ଠ ନାୟକରୂପେ କୁଆଯାଇପାରେ । ଆଧୁନିକ ଯୁଗରେ କେତେକ ନାଟ୍ୟକାର ନାୟକ ନଥାଇ 'ଟ୍ରେଜେଡ଼ି' ସୃଷ୍ଟି କରିଥାନ୍ତି । ଏହିଭଳି ନାଟକକୁ Nicoll 'Heroless tragedy' ନାମରେ ନାମିତ କରିଛନ୍ତି । ଏହିଭଳି ଟ୍ରେଜେଡ଼ିରେ ସମାଜର ବିଧି, ନିଷେଧ ଓ ଆଇନକାନୁନ୍, ସାମାଜିକ ପରିବେଶ ନାନାପ୍ରକାର ପ୍ରତିବନ୍ଧକ ସୃଷ୍ଟି କରି ଜୀବନକୁ ଦୁଃଖମୟ କରିଥାଏ ।

ଆଧୁନିକ ଯୁଗରେ ସବୁ ସମୟରେ ମୃତ୍ୟୁକୁ ଟ୍ରେଜେଡ଼ିର ପରିଣତି ରୂପେ ଗ୍ରହଣ କରାଯାଇନଥାଏ । ଆଜିର ମଣିଷ ଅବସ୍ଥାର ଦାସ । ବ୍ୟକ୍ତି-ବିଶେଷର ଜୀବନ ବେଳେବେଳେ ନାନା ଘଟଣାଚକ୍ରରେ ପଡ଼ି ପରିସ୍ଥିତିର ତାଡ଼ନାରେ ବ୍ୟର୍ଥ ହୋଇଥାଏ । ଏହି ବ୍ୟର୍ଥତା କିମ୍ବା ଅବଶୋଷ ଟ୍ରେଜେଡ଼ିର ପ୍ରଧାନ ଉପଜୀବ୍ୟ । ଆଧୁନିକ ନାଟକ ଓ ଉପନ୍ୟାସରେ ବ୍ୟର୍ଥତାର ଚିତ୍ର ଦେଖିବାକୁ ମିଳେ ଏବଂ ଏହା ଦର୍ଶକ କିମ୍ବା ପାଠକ ମନରେ ବେଦନା ଜାଗ୍ରତ କରିଥାଏ । ତେଣୁ ଆଧୁନିକ ଯୁଗରେ ଟ୍ରେଜେଡ଼ିର ଆକ୍ଷରିକ ଅର୍ଥ ବିୟୋଗାନ୍ତ ନକହି ଦୁଃଖାନ୍ତ ବା ବିଷାଦାତ୍ମକ କହିବା ଅଧିକ ସମୀଚୀନ ।

ଟ୍ରେଜେଡ଼ିରେ ମାନବ ଜୀବନର ନିଦାରୁଣ ବ୍ୟର୍ଥତା ଓ ଅକ୍ଷମତାର ବାଣୀ ଫୁଟିଉଠେ, ସନ୍ଦେହ ନାହିଁ; କିନ୍ତୁ କୌଣସି ଶ୍ରେଷ୍ଠ ଟ୍ରେଜେଡ଼ିରେ ଜୀବନ ପ୍ରତି ବିଦ୍ୱେଷ ଭାବ କିମ୍ବା ବୀତସ୍ପୃହାର ପରିଚୟ ମିଳିନଥାଏ । ଏଥିରେ ବରଂ

ଜୀବନର ଶ୍ରେଷ୍ଠ ରୂପ ସୃଷ୍ଟି ହୋଇଥାଏ । ମଣିଷ ଗଭୀର ଚେତନାବୋଧଦ୍ୱାରା ସେହି ରୂପର ସାକ୍ଷାତ୍ ଲାଭକରି ତୃପ୍ତି ପାଇଥାଏ ।

ତେଣୁ ବିଶିଷ୍ଟ ବଙ୍ଗୀୟ ସମାଲୋଚକ ଅଧ୍ୟାପକ ଶ୍ରୀଶଚନ୍ଦ୍ର ଦାଶ 'ସାହିତ୍ୟ ସନ୍ଦର୍ଶନ' ବହିରେ ଉଲ୍ଲେଖ କରିଛନ୍ତି—

"ଯେଉଁ ନାଟକର ପରିଣତି ମୃତ୍ୟୁ କିମ୍ବା ବ୍ୟର୍ଥତା, ସେହି ନାଟକରେ 'Soul making' ବା ଆତ୍ମଶୁଦ୍ଧି ଦେଖିବାକୁ ମିଳିଥାଏ । ବେଦନା ତାହାକୁ ଅଗ୍ନି-ବିଶୁଦ୍ଧ ସ୍ୱର୍ଣ୍ଣକାନ୍ତି ଦାନ କରି ମହିମାମୟ କରିଥାଏ । ସେହି ହେତୁ ମର୍ମାନ୍ତିକ କାହାଣୀ ତା ନିକଟରେ ଅତି ମଧୁର ହୋଇ ଉଠେ । ଏହି ଅନୁଭୂତି ମଧ୍ୟରେ ଜଗତ ଓ ଜୀବନ ସମ୍ବନ୍ଧରେ ବିସ୍ମୟ-ମଧୁର ଅମୃତର ଆସ୍ୱାଦ ଓ ପରମ ପ୍ରାପ୍ତିର ସାନ୍ତ୍ୱନା ବାଣୀ ନିହିତ ।" ଏହି ଦୃଷ୍ଟିରୁ ସମାଲୋଚକଙ୍କ ମତରେ—

'The strange calm which succeeds the speotacle of tragic dissolution comes not from a sense of defeat but from awe of the fulfilment.'

Alexander—Poetry and the Individual.

ଏହା ବ୍ୟକ୍ତିଗତ ଟ୍ରେଜେଡ଼ି ଆମ ମନରେ ବିସ୍ମୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆମକୁ ବିଭିନ୍ନ ଶିକ୍ଷା ଦେଇଥାଏ ଏବଂ ଆନନ୍ଦ ଦେଇଥାଏ । ଜୀବନର ନାନା ଦିଗ ରଙ୍ଗମଞ୍ଚରେ ଉପସ୍ଥାପିତ ହେବା ଦ୍ୱାରା ଦର୍ଶକ ସେଥିରୁ ଉପଯୁକ୍ତ ଶିକ୍ଷାଲାଭ କରିଥାଏ ।

ପ୍ରାଚୀନ ସଂସ୍କୃତ ନାଟକଗୁଡ଼ିକରେ ଏହିଭଳି ଟ୍ରେଜେଡ଼ି ଦେଖିବାକୁ ମିଳେ ନାହିଁ । ତାହାର ମୂଳକାରଣ ହେଲା ଭାରତୀୟ ଜୀବନଦର୍ଶନ । ଆମର ଦୃଢ଼ ଧାରଣା ମଣିଷ ସମାଜ, ସ୍ରଷ୍ଟାର ଏକ ଅପୂର୍ବ ସୃଷ୍ଟି । ସେ ଅମୃତର ସନ୍ତାନ । ତେଣୁ ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ସକାଶେ । ଏହି ଗଭୀର ବିଶ୍ୱାସ ଆମ ମନରେ ଦେଖାଦେଇଛି । ଅନ୍ଧ ନିୟତିବାଦ

ଉପରେ ଭାରତୀୟ ଆସ୍ଥା ସ୍ଥାପନ କରିପାରେ ନାହିଁ । ଏହି ଦୃଷ୍ଟିରୁ ପ୍ରାଚୀନ କାଳରେ 'ଟ୍ରେଜେଡ଼ି' ସଂସ୍କୃତ ସାହିତ୍ୟରେ ଦେଖାଦେଇ ନଥିଲା । କେବଳ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ ଆଧୁନିକ ଯୁଗରେ ଭାରତର ଅଧିକାଂଶ ପ୍ରାନ୍ତୀୟ ସାହିତ୍ୟରେ ଟ୍ରେଜେଡ଼ି ଜନ୍ମଲାଭ କଲା । ବଙ୍ଗଳା ସାହିତ୍ୟରେ ସର୍ବପ୍ରଥମେ ମାଇକେଲ ମଧୁସୂଦନ ଦତ୍ତ ତାଙ୍କ 'କୃଷ୍ଣକୁମାରୀ' ନାଟକରେ ଟ୍ରେଜେଡ଼ିର ଆଦର୍ଶକୁ ଉପସ୍ଥାପିତ କଲେ । ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମେ ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରେ ପ୍ରଭାବିତ ହୋଇ ଟ୍ରେଜିକ୍ କାବ୍ୟ ସୃଷ୍ଟି କଲେ । ଟ୍ରେଜେଡ଼ିର ସମସ୍ତ ଗୁଣ ଓ ଲକ୍ଷଣ ରାଧାନାଥ କାବ୍ୟରେ ଦେଖିବାକୁ ମିଳିଲା । ପରେ ପରେ ନାଟ୍ୟ-ଭାରତୀ ଅଶ୍ୱିନୀକୁମାର କ୍ଲାସିକେଲ୍ ଟ୍ରେଜେଡ଼ି ଆଦର୍ଶରେ ନାଟକ ରଚନା କଲେ । କିନ୍ତୁ ଆଜି ଓଡ଼ିଆ ସାହିତ୍ୟରେ ବହୁ ନାଟକ ଓ ଉପନ୍ୟାସ ଆଧୁନିକ ଟ୍ରେଜେଡିର ଆଦର୍ଶରେ ଗଢି ଉଠିଛି ଏବଂ ତାହା ଅତି ଜନପ୍ରିୟ ହୋଇପାରିଛି ।

ଯୁଗ ଯୁଗ ଧରି ବେଦନାର ଅନ୍ତରାଳରେ ଅଲୌକିକ ଆନନ୍ଦର ଫଲ୍‌ଗୁ ଧାରା ବହିଚାଲିଛି ଏବଂ ରସପିପାସୁ ମାନବ ତାକୁ ଆସ୍ୱାଦନ କରି ଚାଲିଛି । ତେଣୁ ପ୍ରାଚୀନ ଯୁଗ ହେଉ କିମ୍ବା ଆଧୁନିକ ଯୁଗ ହେଉ ସବୁ ଯୁଗରେ ମଣିଷ ସମାଜ ଟ୍ରେଜେଡ଼ିକୁ ଅତି ଆଦରର ସହିତ ଗ୍ରହଣ କରିଛି । ସେଇଥିପାଇଁ ବିଶ୍ୱକବି ରବୀନ୍ଦ୍ରନାଥ ଗାଇଛନ୍ତି—

'ଅଲୌକିକ ଆନନ୍ଦେର ଭାର
ବିଧାତା ଯାହାରେ ଦେନ ତାର ବକ୍ଷେ ବେଦନା ଅପାର ।'

**କମେଡ଼ି**—ମାନବ ଜୀବନର ହାସ୍ୟୋଦ୍ଦୀପକ ଚିତ୍ର କମେଡ଼ିରେ ଅଙ୍କିତ । ଏହାର ପରିସମାପ୍ତି ଯେତିକି ହାସ୍ୟମଧୁର ସେତିକି ଆନନ୍ଦୋଜ୍ଜ୍ୱଳ । 'ଶାରଦ ଆକାଶର ସୀମାହୀନ ନୀଳିମାର ଯେଉଁ ଅପରୂପ ସ୍ୱଚ୍ଛତା, ଚାନ୍ଦନୀ ସୌନ୍ଦର୍ଯ୍ୟର ଯେଉଁ ପ୍ରଗଳ୍‌ଭ କାନ୍ତି, ଆକାଂକ୍ଷିତ ବ୍ୟକ୍ତିର ସହିତ ମିଳନ ମୁହୂର୍ତ୍ତରେ ପ୍ରେମ-ମୁକୁଳିତାର ଅଧରରେ ଯେଉଁ ହାସ୍ୟରୂପ ଦୀପ୍ତି ଦେଖା

ଦେଇଥାଏ ଶ୍ରେଷ୍ଠ କମେଡ଼ିର ପରିସମାପ୍ତିରେ ସେହି ସ୍ୱଚ୍ଛତା, ସେହି କାନ୍ତି ଏବଂ ସେହି ଶାନ୍ତି ଦେଖିବାକୁ ମିଳେ ।' ★

କମେଡିର ପ୍ରଧାନ ଉପଜୀବ୍ୟ ହାସ୍ୟରସ ସୃଷ୍ଟି । କିନ୍ତୁ ଏହି ହାସ୍ୟରସ କମ୍ବା କୌତୁକ ଜୀବନ ଓ ଜଗତରେ ଦେଖାଯାଉଥିବା ଅସଙ୍ଗତିରୁ ଜନ୍ମଲାଭ କରିଥାଏ । ଏବଂ ଏହି ଅସଙ୍ଗତି ମଣିଷର ଇଚ୍ଛା ସହିତ ଅବସ୍ଥାର ଆକାଂକ୍ଷା ସହିତ ପ୍ରାପ୍ତିର ଏବଂ କଥା ସହିତ କାର୍ଯ୍ୟର ଅସଙ୍ଗତି । ଟ୍ରେଜେଡ଼ିରେ ମଧ୍ୟ ଏହି ଧରଣର ଅସଙ୍ଗତି ଅବଶ୍ୟ ଦେଖିବାକୁ ମିଳିଥାଏ, କିନ୍ତୁ ଟ୍ରେଜେଡ଼ିରେ ଯେଉଁ ଅସଙ୍ଗତି ଦେଖାଦେଇଥାଏ ତାହା ନାୟକର ଜୀବନ ସହିତ ଜଗତର ଏବଂ କମେଡ଼ିରେ ଯେଉଁ ଅସଙ୍ଗତି ଦେଖିବାକୁ ମିଳେ ତାହା ସାଧାରଣତଃ ବଣ୍ଡ ସୃଷ୍ଟିର । ତେବେ ଏହି ଅସଙ୍ଗତି ମଣିଷକୁ ଦୁଃଖ ଦେଇନଥାଏ ବରଂ ଆନନ୍ଦ ଦେଇଥାଏ । ତେଣୁ Aristotle କମେଡ଼ିର ସଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ ଯଥାର୍ଥରେ କହିଛନ୍ତି –

> 'A comedy is an imitation of men worse than the average; worse however, not as regards any and every sort of fault but only as regards particular kind, the ridiculous which is a species of the ugly. The ridiculous may be defined as a mistake or deformity not productive of pain or harm to others.'

ଅନ୍ୟର ଦୁର୍ଦ୍ଦଶାରେ ମଣିଷ ବେଳେବେଳେ ଆନନ୍ଦ ଉପଭୋଗ କରିଥାଏ ସତ, କିନ୍ତୁ ସେହି ଦୁର୍ଦ୍ଦଶା ଦେଖି ତା ମନରେ ସହାନୁଭୂତି ସଞ୍ଚରିତ ହୋଇଥାଏ ଏବଂ ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତି ପ୍ରତି ସେ ସମ୍ବେଦନଶୀଳ ହୋଇଉଠେ । ତେଣୁ ଅସଙ୍ଗତିର ଆଧାରରେ ଯେଉଁ ହାସ୍ୟରସ ସୃଷ୍ଟି ହୋଇଥାଏ ତାହା ମନର ପରେ ଅଶ୍ରୁଳ ଅନୁଭୂତିରେ ପର୍ଯ୍ୟବସିତ ହୁଏ ।

---

★ ଅଧ୍ୟାପକ ଶ୍ରୀଶଚନ୍ଦ୍ର ଦାଶଙ୍କ 'ସାହିତ୍ୟ-ଦର୍ଶନ' ରେ ପ୍ରକାଶ ପାଇଥିବା 'କମେଡ଼ି' ଦ୍ରଷ୍ଟବ୍ୟ ।

ଶ୍ରେଷ୍ଠ କମେଡ଼ି ମଧ୍ୟରେ ମଣିଷର ସରସ ଅନୁଭୂତି ସହିତ ସହାନୁଭୂତି ପ୍ରକାଶ ପାଇଥାଏ । କିନ୍ତୁ କେବଳ ହାସ୍ୟରସ ପରିବେଷଣ ଯାହାର ଲକ୍ଷ୍ୟ ସେଥିରେ ଜୀବନ ଦର୍ଶନର ଶ୍ରେଷ୍ଠ ସଙ୍କେତ ମିଳିନଥାଏ, ତାହା ଉତ୍କୃଷ୍ଟ କମେଡ଼ି ରୂପେ ବିବେଚିତ ନହୋଇ ପ୍ରହସନ ବା farce ରୂପେ ବିବେଚିତ ହୋଇଥାଏ ।

Farce ବା ପ୍ରହସନ କମେଡ଼ିର ଅନ୍ତର୍ଭୁକ୍ତ । ଏହା ମୁଖ୍ୟତଃ ହାସ୍ୟରସାତ୍ମକ ନାଟକ । ଏଥିରେ ଚରିତ୍ର ସୃଷ୍ଟି କିମ୍ବା ସଂଳାପ ଅପେକ୍ଷା ହାସ୍ୟରସ ଉପରେ ଅଧିକ ଗୁରୁତ୍ୱ ଅର୍ପଣ କରାଯାଇଥାଏ । ସମାଲୋଚକ Nicoll ଙ୍କ ମତରେ—

'Farce according to the Etymologists, is a word derived ultimately from the Latin 'Farcio', 'I stuff', so that farce means the type of drama stuffed with low, humour and extravagant wit.'

ପ୍ରାଚୀନ ଗ୍ରୀକ ଓ ଫରାସୀ କମେଡ଼ି ହାସ୍ୟରସୋଦ୍ଦୀପକ । କିନ୍ତୁ ଏହି କମେଡ଼ିଗୁଡ଼ିକର ମୂଳ ଉଦ୍ଦେଶ୍ୟ ଥିଲା ବ୍ୟଙ୍ଗ ରସର ଅବତାରଣା । ସମାଜର ଦୋଷ, ଦୁର୍ବଳତା ଦେଖି ଲେଖକ ସେଥିରେ ମ୍ରିୟମାଣ ହୋଇ ବ୍ୟଙ୍ଗ ବିଦ୍ରୂପ କରିବାର ପ୍ରବୃତ୍ତିକୁ ପ୍ରକାଶ କରିଥିଲେ । କିନ୍ତୁ ରମଣ୍ଟ କମେଡ଼ିର ଉଦ୍ଦେଶ୍ୟ ବଦଳିଗଲା । ବ୍ୟଙ୍ଗ ବିଦ୍ରୂପ ସ୍ଥାନରେ ଉଚ୍ଛଳ ହାସ୍ୟରସ ସୃଷ୍ଟି ହେଲା ।

'Laughter is essentially a social thing, the richest laughter rises out of the group mentality.'

ଏହି ଧାରଣା ପରବର୍ତ୍ତୀ କମେଡ଼ିକୁ ପରିପୁଷ୍ଟ କଲା । ଏବଂ ଏହିପରି କମେଡ଼ି ନାଟକରେ ଚରିତ୍ର ସୃଷ୍ଟି, ସଂଳାପ, ପରିବେଶ ସୃଷ୍ଟି ଓ ଅଙ୍ଗଭଙ୍ଗୀରୁ ହାସ୍ୟରସ ଉଦ୍ରେକ ହେବା ଦେଖାଗଲା ।

ଯୁଗ-ରୁଚିର ପରିବର୍ତ୍ତନ ସଙ୍ଗେ କମେଡ଼ିର ରୂପ ପରିବର୍ତ୍ତିତ ହେବା ଦେଖାଦେଇଛି । ଏଲିଜାବେଥ୍-ଯୁଗରେ କମେଡ଼ିର ପ୍ରଧାନ ଉପଜୀବ୍ୟ ହେଲା ରୋମାନ୍ସ ବା ପ୍ରେମ କାହାଣୀ । ସେକ୍ସପିଅରଙ୍କ 'Midsummer's night dream' ଏହାର ଜୀବନ୍ତ ଆଲେଖ୍ୟ ।

(କ) ଏହା Comedy of romance ରୂପେ ପରିଚିତ । ଏହି ଶ୍ରେଣୀର (Romantic Comedy) ରୋମାଣ୍ଟିକ କମେଡ଼ି ଅତ୍ୟଧିକ କଳ୍ପନାପ୍ରବଣ କିମ୍ବା କାବ୍ୟଧର୍ମୀ । ଏତଦ୍ ବ୍ୟତୀତ ସମାଲୋଚକମାନେ କମେଡ଼ିର ବିଭିନ୍ନ ବିଭାଗ ନିର୍ଦ୍ଦେଶ କରିଛନ୍ତି । ଯଥା -

(ଖ) **ସାମାଜିକ କମେଡ଼ି** ବା Comedy of Manners — ସମାଜର ଧର୍ମ, ଗତି ଓ ଦୃଷ୍ଟି ପ୍ରଭୃତିର ବିଦ୍ରୂପାତ୍ମକ ଅବତାରଣା ଯେଉଁ କମେଡ଼ିରେ ଦେଖିବାକୁ ମିଳେ ତାହା ସାମାଜିକ କମେଡ଼ି ନାମରେ ନାମିତ । ବର୍ଣ୍ଣାର୍ଡ ଶ'ଙ୍କ 'Arms and the Man' ଏକ ଶ୍ରେଷ୍ଠ ସାମାଜିକ କମେଡ଼ି । ଓଡ଼ିଆ ସାହିତ୍ୟରେ ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ 'ଘର ସଂସାର' ନାଟକକୁ ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ ।

(ଗ) ଯେଉଁ କମେଡ଼ି ନାଟକରେ କୌଣସି ଚରିତ୍ର ବା ପାତ୍ରପାତ୍ରୀ ବିରୁଦ୍ଧରେ ଷଡ଼ଯନ୍ତ୍ରମୂଳକ କ୍ରିୟାକଳାପ ଦେଖା ଦେଇଥାଏ ଏବଂ ସେହି କ୍ରିୟାକଳାପ ନାଟକକୁ ଜଟିଳ ତଥା ଗତିଶୀଳ କରିବା ସଙ୍ଗେ ସଙ୍ଗେ ନାଟକର ପରିଣତିକୁ ସରସ, ମଧୁର କରିଥାଏ ସେହି ଧରଣର କମେଡ଼ିକୁ Comedy of Intrigue ବା ଚକ୍ରାନ୍ତମୂଳକ କମେଡ଼ି କୁହାଯାଇଥାଏ । ନିକଲ୍‌ଙ୍କ ମତରେ—

> 'The complication of Comedy of intrigue lead to nothing but merely laughable situation, laughable because of the intellectual in congruity they present.' ★

---

★ An Introduction to Dramatic Theory.

(ଘ) ଯେଉଁ କମେଡ଼ିରେ ଘଟନା ସମାବେଶ ଏବଂ ନାଟକୀୟ ଘାତ-ପ୍ରତିଘାତ ଅପେକ୍ଷା ଚରିତ୍ରଗୁଡ଼ିକର ସଂଳାପ ଉପରେ ବିଶେଷ ଗୁରୁତ୍ୱ ଦିଆ ଯାଇଥାଏ ସେହିଭଳି କମେଡ଼ିକୁ ସଂଳାପ-ପ୍ରଧାନ କମେଡ଼ି ବା 'Comedy of Dialogue' କୁହାଯାଏ । ସେକ୍ସପିଅରଙ୍କ 'As you like it' ଏହି ଶ୍ରେଣୀର ଅନ୍ତର୍ଗତ ।

(ଙ) Gentle Comedyରେ ସାମାଜିକ ଶୃଙ୍ଖଳା ସୁସ୍ପଷ୍ଟ । କିନ୍ତୁ ଲେଖକ ନୈତିକତା ଉପରେ ବିଶେଷ ଦୃଷ୍ଟି ଦେଇଥାନ୍ତି । ଏହା ସହିତ ପାଶ୍ଚାତ୍ୟ ସାହିତ୍ୟରେ ଅନ୍ୟ କେତୋଟି ଶ୍ରେଣୀର କମେଡ଼ି ମଧ୍ୟ ଦେଖା ଦେଇଛି । ଯଥା—ଚରିତ୍ର ପ୍ରଧାନ କମେଡ଼ି ବା Comedy of character, ଚେତ୍ନା-କମେଡ଼ି ଏବଂ Comedy of humour ବା ହାସ୍ୟୋଦ୍ଦୀପକ କମେଡ଼ି । ପ୍ରହସନ ବା Farce ସାଧାରଣତଃ Comedy of humour ରୂପେ ପରିଚିତ ।

ଟ୍ରେଜେଡ଼ିର କରୁଣ ରସ ଯେପରି ଆମମାନଙ୍କ ହୃଦୟରେ ପ୍ରବେଶ କରି ସମସ୍ତ ଗ୍ଲାନି ଓ ମାଳିନ୍ୟକୁ ଦୂର କରି ଜୀବନ ଦୃଷ୍ଟିକି ସ୍ୱଚ୍ଛ, ସୁନ୍ଦର ଓ ସରସ କରିଥାଏ ସେହିପରି ଶ୍ରେଷ୍ଠ କମେଡ଼ି ବ୍ୟକ୍ତିଗତ ଓ ଜାତୀୟ ଜୀବନର ସମସ୍ତ ଦୋଷତ୍ରୁଟି ଓ ଗ୍ଲାନି ନାଟକରେ ଉପସ୍ଥାପିତ କରି ସମସ୍ତ ପ୍ରକାର ଅସଙ୍ଗତିର ଊର୍ଦ୍ଧ୍ୱରେ ଦର୍ଶକମାନଙ୍କୁ ରଖିଥାଏ । ଫଳରେ ଦର୍ଶକ ବା ପାଠକ ବ୍ୟକ୍ତିଗତ ଜୀବନର ଦୁର୍ବଳତା ଉପଲବ୍ଧି କରି ତାକୁ ସଂଶୋଧନ କରିବା ପାଇଁ ଚେଷ୍ଟା କରିଥାଏ । ଟ୍ରେଜେଡ଼ିରେ ଜୀବନର ସମସ୍ତ ବ୍ୟର୍ଥତା ମଧ୍ୟରେ ପରମ ଶାନ୍ତି ଓ ସାନ୍ତ୍ୱନାର ସନ୍ଧାନ ମିଳିଥାଏ । କିନ୍ତୁ କମେଡ଼ିରେ ମଣିଷ ଜୀବନର ନାନା ଘାତ ପ୍ରତିଘାତ ମଧ୍ୟରେ ବଞ୍ଚି ରହିବାକୁ ଚାହେଁ ଏବଂ ପ୍ରତିକୂଳ ଅବସ୍ଥାକୁ ନିୟନ୍ତ୍ରିତ କରି ନିଜର ଆତ୍ମପ୍ରତିଷ୍ଠାଦ୍ୱାରା ଜୀବନକୁ ଉପଭୋଗ କରିବାକୁ ଚାହେଁ ।

ମୋଟଉପରେ କହିବାକୁ ଗଲେ ବେଦନା ମଧ୍ୟରେ ଆନନ୍ଦ ଉପଲବ୍ଧି କରିବା ଟ୍ରେଜେଡ଼ିର ଉଦ୍ଦେଶ୍ୟ ଏବଂ ଆନନ୍ଦ ମଧ୍ୟରେ ବେଦନାର ଅମୃତକୁ ପାନ କରିବା ଆକାଂକ୍ଷା କମେଡ଼ିର ପ୍ରଧାନ ଉପଜୀବ୍ୟ ।

# ଗୋପବନ୍ଧୁଙ୍କ ସାହିତ୍ୟରେ ସମାଜ-ଚେତନା

ଗୋପବନ୍ଧୁ ଥିଲେ ଜନ-ଜୀବନର ଶ୍ରେଷ୍ଠ ପ୍ରତିନିଧି । ତାଙ୍କ ମହନୀୟ ବ୍ୟକ୍ତିତ୍ୱ ତାଙ୍କର ପ୍ରତ୍ୟେକ କର୍ମ, ବାକ୍ୟ ଓ ଚିନ୍ତାରେ ସ୍ପଷ୍ଟ ପ୍ରତିଫଳିତ । ସେହି ବଳିଷ୍ଠ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ହେଲା ସମାଜସେବା— ଜନକଲ୍ୟାଣ ସକାଶେ ନିଜର ସମସ୍ତ ସ୍ୱାର୍ଥକୁ ତ୍ୟାଗକରି ସାମାଜିକ ଜୀବନ-ପ୍ରବାହରେ ନିଜକୁ ଭସେଇ ଦେବା । ଏହିଭଳି ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଯୁଗେ ଯୁଗେ ଦେଶର ଜନନାୟକ, କବି ଓ ଚିନ୍ତାଶୀଳ ମନୀଷୀମାନଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥାଏ । ଗୋପବନ୍ଧୁ ତାଙ୍କ କର୍ମମୟ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ଓଡ଼ିଆ ଜାତିର ଜାଗ୍ରତ ଜୀବନ ସହିତ ଓତଃପ୍ରୋତ ଭାବରେ ମିଳାଇ ଦେଇଥିଲେ । ତେଣୁ ଯଥାର୍ଥରେ କୁହାଯାଇପାରେ ଗୋପବନ୍ଧୁ ସାମ୍ପ୍ରତିକ ଓଡ଼ିଆ ଜାତିର ଏକକ ଏବଂ ପରିପୂର୍ଣ୍ଣ ମୂର୍ତ୍ତିବିକାଶ । ଗୋପବନ୍ଧୁ କେବଳ ଓଡ଼ିଶାର ସାମ୍ପ୍ରତିକ ରାଜନୈତିକ ଓ ସାମାଜିକ ଜୀବନ ପ୍ରତି ସଚେତନ ନଥିଲେ, ସମଗ୍ର ଭାରତର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନ ପ୍ରତି ମଧ୍ୟ ସେ ସର୍ବଦା ସଚେତନ ଥିଲେ । ସମଗ୍ର ଭାରତର ଶାନ୍ତି, ମୁକ୍ତି ଓ ପ୍ରଗତି ପାଇଁ ସେ ସର୍ବଦା ଧ୍ୟାନ କରୁଥିଲେ । ତେଣୁ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଦୁଇଟି ଦିଗ ସହଜରେ ଲକ୍ଷ୍ୟ କରାଯାଇଥାଏ । ପ୍ରଥମଟି ହେଲା ସ୍ୱାଧୀନତା ପ୍ରାପ୍ତି ପାଇଁ କର୍ମକ୍ଷେତ୍ରର ପ୍ରସ୍ତୁତି । ବ୍ରିଟିଶ ଶାସନର ଦମନ, ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଅସହଯୋଗ ଆନ୍ଦୋଳନ ଓ 'ଅହିଂସା' ବାଣୀ ପ୍ରଚରିତ ହୋଇଥିଲା ଆକୁମାରୀ ହିମାଚଳ ଯାଏଁ, ସେହି ମହାନ୍ ବାଣୀର ଶ୍ରେଷ୍ଠ ପ୍ରଚାରକ ଥିଲେ ଗୋପବନ୍ଧୁ । ସତ୍ୟବାଦୀର ବନବିଦ୍ୟାଳୟ ଥିଲା ସ୍ୱାଧୀନତା ସଂଗ୍ରାମର ପବିତ୍ର କର୍ମ-କେନ୍ଦ୍ର । ଓଡ଼ିଶାର ଅଗଣିତ ଲୋକଙ୍କ ଉପରେ ନୈତିକ ପ୍ରଭାବ ପକାଇ ଏହି ମୁକ୍ତି ସଂଗ୍ରାମକୁ ଆହ୍ୱାନ କରି ଯଶସ୍ୱୀ ହୋଇ ପାରିଥିଲେ ସେ । ଦ୍ୱିତୀୟଟି ହେଲା ବନ୍ୟା, ମରୁଡ଼ି କଷ୍ଟ, ଦୁର୍ଭିକ୍ଷ ପ୍ରପୀଡ଼ିତ ଅବହେଳିତ ଓଡ଼ିଶାର ଦରିଦ୍ର ଜନତାର ସେବା । ମହାତ୍ମା

ଗାନ୍ଧୀ ଏବଂ ସମାଜସେବୀ ଗୋପବନ୍ଧୁ ଆଣ୍ଡ୍ରୁଜଙ୍କ ପ୍ରେରଣା ପାଇ 'ସେବା-ଧର୍ମ'କୁ ସେ ନିଜର ସାର୍ଥକ ଧର୍ମରୂପେ ମଣିଥିଲେ ।

ସେବକ ଗୋପବନ୍ଧୁଙ୍କ ଭାଷାରେ "ଆମ୍ଭମାନଙ୍କ ଜାତୀୟ ଶକ୍ତିର ମୂଳ ପଲ୍ଲୀରେ । ଭାରତୀୟ ସଭ୍ୟତାର କେନ୍ଦ୍ର ସହର ନୁହେ, ପଲ୍ଲୀ ଗ୍ରାମ; ନଗରର କୃତ୍ରିମତାରେ ନୁହେ, ପଲ୍ଲୀର ସ୍ୱାଭାବିକତାରେ । × × × × ଆମ୍ଭମାନଙ୍କ ଜାତୀୟ ଜୀବନର ଗତି ଏବଂ ଜାତୀୟ ଶକ୍ତିର ଗୁରୁତ୍ୱ ସହରର ସଭ୍ୟତାଦ୍ୱାରା ମପାଯିବା ଉଚିତ ନୁହେଁ । ସେଥିଲାଗି ଦେଶ ଭିତରେ ପଶି ଅନ୍ଧକାର ଅନୁସନ୍ଧାନ କରିବା ପ୍ରୟୋଜନ ।" ତେଣୁ ଏହି ଦୃଷ୍ଟିରୁ ଗୋପବନ୍ଧୁ ଓଡ଼ିଶାର ପଲ୍ଲୀ ଜୀବନର ପୁନର୍ଗଠନ, ଶୃଙ୍ଖଳା ଓ ସୁଦୃଢ଼ତା ପାଇଁ ଜଣେ ନିଷ୍ଠାପର ସମାଜସେବୀ ଭାବରେ ଗ୍ରାମାଞ୍ଚଳ ସମାଜର ଉନ୍ନତି ବିଧାନକୁ ଶ୍ରେଷ୍ଠ ଜାତୀୟ କର୍ମରୂପେ ମଣିଥିଲେ । ୧୯୨୪ ସାଲରେ ମହାତ୍ମା ଗାନ୍ଧୀଙ୍କ 'ସର୍ବୋଦୟ ଚିନ୍ତା'ରେ ଯେଉଁଭଳି ସମାଜସେବାର ପନ୍ଥା ନିର୍ଦ୍ଦେଶ କରାଯାଇଥିଲା, ତାର ବହୁ ପୂର୍ବରୁ ୧୯୧୪ ସାଲରେ ଗୋପବନ୍ଧୁ ସେହିଭଳି କାର୍ଯ୍ୟ ଆରମ୍ଭ କରି ପଲ୍ଲୀ ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ମନପ୍ରାଣ ଢାଳିଥିଲେ । ୧୯୨୨ ବର୍ଷ, କୁମ୍ଭ ମାସର ପ୍ରଥମ ସଂଖ୍ୟା 'ସତ୍ୟବାଦୀ' ପତ୍ରିକାରେ 'ସୂଚନା' ଶୀର୍ଷକ ପ୍ରବନ୍ଧରେ ଗୋପବନ୍ଧୁ ଯାହା ଆଲୋଚନା କରିଅଛନ୍ତି ବାସ୍ତବିକ୍ ତାହା ଏକ ନିର୍ଭେଟ ସତ୍ୟ । ଯୁବ ସମ୍ପ୍ରଦାୟକୁ ସତର୍କବାଣୀ ଶୁଣାଇ ସେ କହିଛନ୍ତି—

"ଆଜକାଲି ଅଳ୍ପ ବହୁତ ଦେଶରେ ଯେ କିଛି ଶିକ୍ଷା ପାଇଲେ ତାଙ୍କ ମୁହଁ ସହର ଆଡ଼କୁ । ଯେଉଁମାନେ ବିଶ୍ୱବିଦ୍ୟାଳୟର ଉପାଧି ପାଇଲେ, ସେମାନେ ପଢ଼ିବା ଅବସ୍ଥାରେ ପନ୍ଦର ସତର ବରଷ ସହରରେ ରହି ଏପରି ଅଭ୍ୟସ୍ତ ହେଲେ ଯେ, ମଫସଲ ସେମାନଙ୍କୁ ଆଉ ସୁଖ ଲାଗୁନାହିଁ । ପୁଣି ଚାକିରି ହେତୁ ହେଉ ବା ବ୍ୟବସାୟ ଯୋଗୁଁ ହେଉ, ସେମାନଙ୍କ ଜୀବିକା ଉପାୟର ସ୍ଥାନ ହେଲା ସହର ।

× × × × ×

ପଲ୍ଲୀ ସହିତ ଶିକ୍ଷିତମାନଙ୍କ ସମ୍ପର୍କ, ସହାନୁଭୂତି, ସ୍ନେହ ମମତା କ୍ରମେ ଏହିପରି ତୁଟିଯାଉଥିବା ସ୍ଥଳେ 'ଜାତୀୟ ଜୀବନ', 'ସାମାଜିକ

କଲ୍ୟାଣ', 'ଦେଶର ଉନ୍ନତି' ପ୍ରଭୃତି କଥାମାନ ଏହି ଶିକ୍ଷିତ ଲୋକଙ୍କ ମୁଖରେ ଅସାର ବିଡ଼ମ୍ବନା ବୋଲି ବୋଧହୁଏ ନାହିଁ କି ? × × × ଦେଶକୁ ବୁଝିବାକୁ ହେଲେ ସହର, ପ୍ରାନ୍ତର, ଗ୍ରାମ, ଗୁହା, ପଡ଼ା, ପାଟଣା, ପୁର, ପଲ୍ଲୀ, ଗ୍ରୋଟିବଡ଼ି ସମସ୍ତ ଜନପଦକୁ ହିସାବକୁ ନେବାକୁ ହେବ ।"

ଅତଏବ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ପଲ୍ଲୀପ୍ରାଣତା ଏବଂ ସମାଜ-ସଚେତନତା ଉଭୟ ହିଁ କର୍ମଯୋଗୀ ଗୋପବନ୍ଧୁଙ୍କ ଜୀବନର ଶ୍ରେଷ୍ଠ ଆଦର୍ଶ । ଏହି ଆଦର୍ଶର ପ୍ରକାଶ, ପ୍ରଚାର ଏବଂ ପ୍ରତିଷ୍ଠା ପାଇଁ ସେ କେବଳ ବନ୍ୟାକ୍ଲିଷ୍ଟ ଅଂଚଳରେ ଚୂଡ଼ା, ଚାଉଳ ବାଣ୍ଟି, ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କର ଦୁଃଖ, ଦୁର୍ଦ୍ଦଶା ଦେଖି ଅଶ୍ରୁମୋଚନ କରି ନିଶ୍ଚିନ୍ତ ରହିନଥିଲେ । ଓଡ଼ିଶାର ବନ୍ୟା, ମରୁଡ଼ି ପରି ସ୍ଥାୟୀ ସମସ୍ୟାର ସମାଧାନ ସହିତ ପରାଧୀନ ଓଡ଼ିଶାର ଅବହେଳିତ, ନିଷ୍ପେଷିତ, ଅତ୍ୟାଚାର ଜର୍ଜରିତ ପ୍ରଜାମାନଙ୍କର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ସର୍ବାଙ୍ଗୀନ ଉନ୍ନତି ପାଇଁ ବଳିଷ୍ଠ ଲେଖନୀ ଚାଳନା କରି ଜୀବନଧର୍ମୀ ସାହିତ୍ୟ ସୃଷ୍ଟି କରିଥିଲେ । ସୁତରାଂ ସାଧକ ଗୋପବନ୍ଧୁଙ୍କ ସାହିତ୍ୟ ସାଧନା ତାଙ୍କ କର୍ମମୟ ଜୀବନର ଏକ ଅଂଶ ବିଶେଷ । ଗୋପ ସାହିତ୍ୟ ଏକ ଅନବଦ୍ୟ ସୃଷ୍ଟି । ପ୍ରାଣପ୍ରାଚୁର୍ଯ୍ୟ ଓ ରସ ମାଧୁର୍ଯ୍ୟର ଅପୂର୍ବ ସମନ୍ୱୟ ସେହି ସାହିତ୍ୟରେ ଦେଖିବାକୁ ମିଳେ । ଓଡ଼ିଶାର ରାଜନୈତିକ ତଥା ସାମାଜିକ ଜୀବନର ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ଗୋପ ସାହିତ୍ୟର ବଳିଷ୍ଠ ଭୂମିକା ଅବଶ୍ୟ ସ୍ୱୀକାର୍ଯ୍ୟ ।

ଗୋପବନ୍ଧୁ ମୁଖ୍ୟତଃ ଜୀବନର କବି । ଜୀବନର ଜୟଗାନରେ ତାଙ୍କ ସାହିତ୍ୟ ମୁଖରିତ । ତେଣୁ ସେହି ସାହିତ୍ୟରେ ମାନବିକତାର ଧ୍ୱନି ଶୁଣିବାକୁ ମିଳେ ଏବଂ ଶୁଦ୍ଧପୂତ ମାର୍ଜିତମୟ ଜୀବନ ଯାପନ ପାଇଁ ଆଧ୍ୟାତ୍ମିକତାର ସତ୍ତା ଅନୁଭୂତ ହୁଏ । ବ୍ୟକ୍ତିକ ଜୀବନର ଆଶା, ନିରାଶାର ପ୍ରାଣବନ୍ତ ଉଦ୍‌ବେଳନ ସହିତ କ୍ରାନ୍ତିକାରୀ ସମାଜ-ଚେତନାର ଅପୂର୍ବ ପରିପ୍ରକାଶ ହୋଇଛି ଗୋପବନ୍ଧୁଙ୍କ ସାହିତ୍ୟ । ତେଣୁ ଏହି ସାହିତ୍ୟ ଦେଶ ପ୍ରେମ ଓ ମାନବ ପ୍ରେମର ଏକ ନୂତନ ବାସ୍ତବ ଦିଗ୍‌ଦର୍ଶନର ପରିଚୟ ଦିଏ । ଗୋପବନ୍ଧୁଙ୍କ ଅମୂଲ୍ୟ ଜୀବନ ଯେତିକି ତ୍ୟାଗ ପ୍ରତିଭାରେ ସମୁଜ୍ଜ୍ୱଳ, ସେତିକି ମାନବିକତାର ମହାନ୍ ଆଦର୍ଶରେ ମହୀୟାନ । ସାହିତ୍ୟ ସୃଷ୍ଟି ତାଙ୍କ ଜୀବନର ଅପୂର୍ବ

ଝାଉଁ ହେଲେ ସୁଦ୍ଧା ସେ ଏକାଧାରରେ କର୍ମୀ, ଜନନାୟକ, ରାଜନୀତିଜ୍ଞ, ଆଧ୍ୟାତ୍ମବାଦୀ ଏବଂ କବି । ଜୀବନର ସୁଖ, ଦୁଃଖ, ଆଶା-ନିରାଶା ମଧ୍ୟରେ ସେ ଜୀବନ ଦେବତାର ଆରାଧନା କରିଅଛନ୍ତି । କବିଙ୍କର ଦେଶପ୍ରେମ ସୃଜନାତ୍ମକ ଏବଂ ତାଙ୍କ ସାହିତ୍ୟ ସାଧନା ମୂଳରେ ରହିଛି ଗଭୀର ଦେଶ ପ୍ରୀତି, ମାତୃ-ନିଷ୍ଠା, ତ୍ୟାଗ ଏବଂ ସମାଜ ତଥା ଆଧ୍ୟାତ୍ମିକ ଚେତନା ।

ବ୍ରିଟିଶ ଶାସନର 'ଶୋଷଣ' ଭାରତର ସାମାଜିକ ଜୀବନରେ ଏକ ନୂତନ ଜାଗରଣ ଆଣିଥିଲା । ଅସହଯୋଗ ଆନ୍ଦୋଳନ, ଅହିଂସା ମନ୍ତ୍ରରେ ଦୀକ୍ଷିତ ସତ୍ୟାଗ୍ରହୀର ସତ୍ୟାଗ୍ରହ ଭାରତର ରାଜନୈତିକ ଜୀବନରେ ଉଗ୍ର ଜାତୀୟ ଚେତନାର ସୂତ୍ରପାତ କରିଥିଲା । ଫଳରେ ଏହି ନୂତନ ଯୁଗର ନୂତନ ଚିନ୍ତା ଅଧିକାଂଶ ଦେଶପ୍ରେମୀ କବିଙ୍କ ସୃଷ୍ଟିରେ ଆତ୍ମପ୍ରକାଶ କଲା । ତେଣୁ ଜାତୀୟତାବାଦୀ କବି ଗୋପବନ୍ଧୁ ନିଜ କର୍ମମୟ ଜୀବନର ସମସ୍ତ ବାସ୍ତବ ଅନୁଭୂତିକୁ ନେଇ ପ୍ରକାଶ କଲେ 'ବନ୍ଦୀର ଆତ୍ମକଥା', 'କାରା କବିତା', 'ଧର୍ମପଦ' ଓ 'ଅବକାଶ ଚିନ୍ତା' ପ୍ରଭୃତି । ଏଥିରେ ସନ୍ନିବେଶିତ କବିତା-ଗୁଡ଼ିକରେ ଗୋପବନ୍ଧୁଙ୍କ ସମ୍ବେଦନଶୀଳତା ଏବଂ ଆବେଗ ପ୍ରବଣତା ଅତିମାତ୍ରାରେ ଦେଖିବାକୁ ମିଳେ । ସମାଲୋଚକଙ୍କ ମତରେ "ବନ୍ଦୀର ଆତ୍ମକଥା ହିଁ ଗୋପବନ୍ଧୁଙ୍କ ଜୀବନ-ଦର୍ଶନର ରାଜନୀତି, ସମାଜନୀତି, ଧର୍ମନୀତି ଓ କର୍ମନୀତିର ପୁଞ୍ଜିଭୂତ ଆତ୍ମପ୍ରକାଶ, ଆତ୍ମନିବେଦନ ଓ ଆତ୍ମୋତ୍ସର୍ଗ ।" ତେଣୁ ସମାଜର ସୁସ୍ଥ ସଂଗଠନ ଏବଂ ବିକାଶ ଦିଗରେ ଗୋପ ସାହିତ୍ୟ ଯଥେଷ୍ଟ ପ୍ରେରଣା ଯୋଗାଇଥାଏ ।

ଉତ୍କଳର ପୁରପଲ୍ଲୀରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରିବାକୁ ଯାଇ ଗୋପବନ୍ଧୁ ଅକାତରେ କାରାବରଣ କରିଥିଲେ । ହଜାରିବାଗ୍ ଜେଲ୍ର ଅନ୍ଧକାର ପ୍ରକୋଷ୍ଠ ଭିତରେ ଆବଦ୍ଧ ରହି ସେ ସ୍ୱାଧୀନତାର ସ୍ୱପ୍ନ ଦେଖୁଥିଲେ । ସେତେବେଳେ ଅତୀତର ସୁଖ-ଦୁଃଖର ସ୍ମୃତି କବିଙ୍କ ମାନସପଟରେ ନାଚି ଯାଉଥାଏ । ତେଣୁ ବନ୍ଦୀ-ଜୀବନର ଅଶାନ୍ତି ଓ ଅସନ୍ତୋଷ ମଧ୍ୟରେ ହୀନତାର ଭାବ ପ୍ରକାଶ ନକରି ଗୋପବନ୍ଧୁ ବଳିଷ୍ଠ ଆଶାବାଦୀ ରୂପେ ଦେଶର ଜନସାଧାରଣଙ୍କୁ ଆଶ୍ୱାସନା ବାଣୀ ଶୁଣାଇ ଭବିଷ୍ୟତ କର୍ମପନ୍ଥା ପ୍ରତି ସଚେତନ ରହିବା ପାଇଁ କହିଛନ୍ତି—

"ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
× × ×
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
× × ×
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।
[ ବନ୍ଦୀର ଆତ୍ମକଥା ]

ଜାତୀୟତାବାଦୀ କବି ଗୋପବନ୍ଧୁଙ୍କ ପ୍ରାଣରେ ଏହି ଆବେଗ ଏବଂ ଭଗବାନଙ୍କ ନିକଟରେ ଏ ଯେଉଁ ଆତ୍ମନିବେଦନ ତାଙ୍କ ସାହିତ୍ୟରେ ଅଭିବ୍ୟକ୍ତ କରିଛନ୍ତି ଅତ୍ୟୁକ୍ତି ହେବନାହିଁ ।

ଗୋପବନ୍ଧୁଙ୍କ ସାହିତ୍ୟରେ ସମାଜର ଶାନ୍ତି, ମୁକ୍ତି, ପ୍ରଗତି ଏବଂ ସାମ୍ୟବାଦର ପ୍ରତିଷ୍ଠା ପାଇଁ ଯେତିକି କବି ପ୍ରାଣ ଉଦ୍‌ବେଳିତ ସେତିକି ମାନବ ସେବା ଓ ମହାକାରୁଣ୍ୟ ଭାବଧାରାର ସନ୍ଧାନ ପାଇବା ପାଇଁ ଉତ୍କଣ୍ଠିତ । ଦେଶରେ ସମାଜବାଦର ପ୍ରତିଷ୍ଠା, ଲୋକମତର ମହତ୍ତ୍ୱ ଓ ଗଣତାନ୍ତ୍ରିକ ରାଷ୍ଟ୍ରଶାସନ ପଦ୍ଧତିର ସ୍ୱରୂପ ବିଷୟରେ ସେ ଯେପରି ଭାବେ ବିଶ୍ଳେଷଣ କରିଅଛନ୍ତି ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ । ତାଙ୍କ ସମାଜବାଦର ପରିକଳ୍ପନା ଏକ ବାସ୍ତବ ପରିକଳ୍ପନା । ସମାଜବାଦର ପ୍ରତିଷ୍ଠା ପାଇଁ ଗୋପବନ୍ଧୁ କୌଣସି ଉଗ୍ର ବୈପ୍ଳବିକ ପନ୍ଥା ଗ୍ରହଣ କରିନାହାନ୍ତି କିମ୍ବା ହିଂସାତ୍ମକ ମାର୍ଗର ଆଶ୍ରୟ ନେଇନାହାନ୍ତି । ବିଶ୍ୱାନୁରାଗ, ଭଗବତ୍ ପ୍ରେମ ଏବଂ ଦେଶର ଐତିହ୍ୟ ଓ ପରମ୍ପରା ପ୍ରତି ଗଭୀର ବିଶ୍ୱାସ ରଖି ଦେଶରେ ସମାଜବାଦ-ପ୍ରତିଷ୍ଠା ପାଇଁ ସେ ସର୍ବଦା ସଚେତନ ଥିଲେ । ତେଣୁ ଅହିଂସା ଓ ଶାନ୍ତିର ମାର୍ଗକୁ ଶ୍ରେଷ୍ଠ ମାର୍ଗରୂପେ ସେ ବାଛି ନେଇଥିଲେ । ଏହା ହିଁ ଗୋପବନ୍ଧୁଙ୍କ ସମାଜବାଦ ମତ ଓ ଆଦର୍ଶର ବୈଶିଷ୍ଟ୍ୟ ।

ଦେଶରେ ସ୍ୱାଧୀନତା ବିନା ସମାଜବାଦ ପ୍ରତିଷ୍ଠା ଅସମ୍ଭବ । ତେଣୁ ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରି ଦେଶମାତୃକାକୁ ପ୍ରଥମେ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଆହ୍ୱାନ ଜଣାଇ ଲେଖିଛନ୍ତି—

"ମୋ ଭାଇ ଭଉଣୀ ହେ ଉତ୍କଳବାସୀ
ସ୍ୱରାଜ୍ୟ-ସାଧନେ ନହୁଅ ଉଦାସୀ ।
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର
ଏହା ବିନେ ଦେଶ ହୁଏ ଛାରଖାର ।
× × ×
କର ଯୋଡ଼ି କରେ ବିନତି ଏତିକି
ଅସହଯୋଗରେ ରଖିବ ମତିକି ।
ଢାଳିଦିଅ ପ୍ରାଣ ସ୍ୱରାଜ୍ୟ-ସାଧନେ
ଆଶ୍ୱାସିବ ଯେବେ ମୋତେ ବନ୍ଦୀସନେ ।
× × ×
ଉଇଁ ଆସୁଅଛି ସ୍ୱରାଜ୍ୟ-ତପନ
ଭାରତେ ଜାଗ୍ରତ ନରନାରୀଗଣ ।
ଘୁମାଇ ନ ରହ ଏ ସମୟେ ଆଜ
ଉଠ ଉଠ ବେଗେ ବେଳ ଥାଉଁ ଥାଉଁ ।"

[ ବନ୍ଦୀର ଆତ୍ମକଥା ]

ଯୁଗ ପୁରୁଷ ଗୋପବନ୍ଧୁ ଦେଶର ମୁକ୍ତି ଆନ୍ଦୋଳନ ପାଇଁ ଜାଗ୍ରତ ରହିବାକୁ ଯେପରି ଭାବେ ଭାବବହ୍ୱଳ ହୋଇ ଦେଶବାସୀଙ୍କୁ ବିନତି ଜଣାଇଛନ୍ତି, ଯୁଗସ୍ରଷ୍ଟା ଜବାହରଲାଲ ନେହେରୁ ମଧ୍ୟ ଠିକ୍ ସେହିପରି ୧୯୩୦ ସାଲରେ ଗାନ୍ଧୀଜୀଙ୍କ ନେତୃତ୍ୱରେ 'ଲବଣ ସତ୍ୟାଗ୍ରହ' ଚାଲିଥିବା ବେଳେ ଦେଶବାସୀଙ୍କୁ ଆହ୍ୱାନ ଜଣାଇ ଓଜସ୍ୱିନୀ ଭାଷାରେ କହିଥିଲେ—

"Will you be mere lookers-on in this glorious struggle? The field of battle lies

before you. The flag of India awaits your coming..........who lives if India dies and who dies if India lives ?"

"ତୁମେ କିଏ ଏହି ବୀରବୋଜ୍ଜ୍ୱଳ ସଂଘର୍ଷରେ କେବଳ ଦେଖଣାହାରୀ ହୋଇ ରହିବ ? ତୁମ ଆଖି ଆଗରେ ସମର ପ୍ରାଙ୍ଗଣ । ଭାରତର ଜାତୀୟ ପତାକା ତୁମକୁ ଚାହିଁ ରହିଛି । ...ଯଦି ଭାରତର ମୃତ୍ୟୁ ଘଟେ ବଞ୍ଚିବ କିଏ ? ଯଦି ଭାରତ ଅମର ବଞ୍ଚି ରହିବ ତେବେ ମରିବ କିଏ ?" ★ ଗୋପବନ୍ଧୁଙ୍କ ନମ୍ର ନିବେଦନ ସହିତ ପଣ୍ଡିତ ନେହେରୁଙ୍କର ଏହି ନିବେଦନର ଯଥେଷ୍ଟ ସାମଞ୍ଜସ୍ୟ ଥିବା ମନେହୁଏ ।

ସ୍ୱାଧୀନତା ପ୍ରାପ୍ତି ପରେ ଦେଶରେ ଗଣତାନ୍ତ୍ରିକ ଶାସନ ଓ ସମାଜବାଦର ପ୍ରତିଷ୍ଠା ପାଇଁ ମହାତ୍ମା ଗାନ୍ଧୀ, ଲୋକମାନ୍ୟ ତିଳକ, ଲାଲା ଲଜପତ ରାୟ, ଗୋପାଳକୃଷ୍ଣ ଗୋଖଲେ ଏବଂ ପଣ୍ଡିତ ନେହେରୁ ପ୍ରଭୃତି ବିଶିଷ୍ଟ ଚିନ୍ତାଶୀଳ ଜନନାୟକମାନେ ଯେଉଁ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରି ନିଜ ନିଜର ମନ୍ତବ୍ୟ ପ୍ରକାଶ କରିଥିଲେ ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଅନୁରୂପ ଚିନ୍ତା ପ୍ରକାଶ କରି ଅର୍ଥନୈତିକ ସମସ୍ୟାର ସମାଧାନ ପାଇଁ ଡାକ ଦେଇଛନ୍ତି । ମାନବବାଦୀ କବି ଗୋପବନ୍ଧୁ ଅବହେଳିତ, ଲାଞ୍ଛିତ, ଶୋଷିତ ନରନାରୀ ପ୍ରତି ସହାନୁଭୂତି ପ୍ରକାଶ କରି ଗାଇଛନ୍ତି—

"ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।
କେତେ କେତେ କୃଷୀ ଭଲ ଭଲ ଲୋକ
ନ ପାନ୍ତି ଦି'ବେଳା ପେଟପୂରା ତୋକ ।"

---

★ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ, ଓ. ଏଫ୍. ଏସ୍.ଙ୍କ 'ଯୁଗସ୍ରଷ୍ଟା ନେହେରୁ' ୨ୟ ସଂସ୍କରଣ, ପୃ ୭୬ ।

ଗୋପବନ୍ଧୁ ଉତ୍କଳର ଆର୍ଥିକ ଦୁରବସ୍ଥାର ଏ ଯେଉଁ ଚିତ୍ର ଦେଇଛନ୍ତି ତାହା କେବଳ ଉତ୍କଳର ନୁହେଁ, ସମଗ୍ର ଭାରତର ଏକ ଆର୍ଥିକ ସଙ୍କଟର ଚିତ୍ର । ତେଣୁ ଏହି ଅର୍ଥନୈତିକ ସମସ୍ୟାର ସ୍ଥାୟୀ ସମାଧାନ ଆବଶ୍ୟକ । ଏହି ସମସ୍ୟାର ସମାଧାନ ନହେଲେ ସମାଜବାଦର ପରିକଳ୍ପନା ବିଡମ୍ବନା ମାତ୍ର । ସେହି ଦୃଷ୍ଟିରୁ ଜନନାୟକ ନେହେରୁ ଦୃଢ଼ ଭାବେ କହିଥିଲେ —

**"I am convinced that the only key to the solution of the world's problem and of India's problem lies in socialism."**

"ମୁଁ ହୃଦୟଙ୍ଗମ କରୁଛି ଯେ, ପୃଥିବୀ ଏବଂ ଭାରତର ସମସ୍ୟା-ଗୁଡ଼ିକର ସମାଧାନ ଲାଗି ସମାଜବାଦ ହିଁ ଏକମାତ୍ର ସୂତ୍ର ।"

[ ଯୁଗସ୍ରଷ୍ଟା ନେହେରୁ ]

ବିପ୍ଳବୀ କବି ଗୋପବନ୍ଧୁ ମଧ୍ୟ 'ସମାଜବାଦ' ଉପରେ ଗଭୀର ଆସ୍ଥା ରଖି କହିଛନ୍ତି —

"ପ୍ରଜା ଲାଗି ରଜା, ପ୍ରଜାହିତେ ରାଜନୀତି
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି ।
ସାର୍ବଭୌମ ସନାତନ ଏ ଶାସନ ବିଧି
ଲଭିଛି ସର୍ବତ୍ର ଆଜି ବିଶେଷ ପ୍ରସିଦ୍ଧି ।"

[ କାରା କବିତା ]

ଗୋପବନ୍ଧୁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ସମାଜବାଦର ଭିତ୍ତିରୂପେ ମଣିଛନ୍ତି । ତେଣୁ କବିଙ୍କର ଦୃଢ଼ବିଶ୍ୱାସ ଦେଶରେ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠିତ ହେଲେ ସମାଜବାଦ ସ୍ୱତଃ ମୁଣ୍ଡଟେକି ଉଠିପାରିବ । ଗୋପବନ୍ଧୁଙ୍କ ଏହି ବିଶ୍ୱାସ ଏକ ଚିରନ୍ତନ ବିଶ୍ୱାସ । ପଣ୍ଡିତ ନେହେରୁ ମଧ୍ୟ ଥରେ ଭାବବିହ୍ୱଳ ହୋଇ କହି ପକାଇଥିଲେ—

"I have been and am a convinced socialist and a believer in democracy."

ଅତଏବ ଦରଦୀ କବି ଗୋପବନ୍ଧୁଙ୍କ ମତରେ—

"ସ୍ୱରାଜ୍ୟେ ଏ ମାଟି ହୋଇବ ପ୍ରଚୁର
ନ ରହିବ ଆଉ ଦୁଃଖ ଦୁରାଚାର ।
ନ ସହିବ କଷ୍ଟ କେହି ଅନାହାରେ
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।"

ଭାରତରେ ସମାଜବାଦର ପ୍ରତିଷ୍ଠା ପାଇଁ ଗୋପବନ୍ଧୁ ଯେଉଁ ପନ୍ଥା ନିର୍ଦ୍ଦେଶ କରିଅଛନ୍ତି ତାହା ଏକ ସ୍ୱତନ୍ତ୍ର ପନ୍ଥା । ବିଶ୍ୱର ବିଭିନ୍ନ ରାଷ୍ଟ୍ରନାୟକଙ୍କ ପନ୍ଥାଠାରୁ ଏହା ଏକ ସ୍ୱତନ୍ତ୍ର ଏବଂ ମୌଳିକ ପନ୍ଥା । ଏହା ଗୋପବନ୍ଧୁଙ୍କର ନିଜସ୍ୱ କହିଲେ ଚଳେ । ଗୋପବନ୍ଧୁଙ୍କ କର୍ମପନ୍ଥାର ବୈଶିଷ୍ଟ୍ୟ ହେଲା ଦେବଭୂମି, କର୍ମଭୂମି ତଥା ଧର୍ମଭୂମି ଭାରତର ପରମ୍ପରା ପ୍ରତି ଗଭୀର ଅନୁରାଗ ପ୍ରକାଶ କରି, ଆଧ୍ୟାତ୍ମିକତା ଉପରେ ଦୃଢ଼ବିଶ୍ୱାସ ରଖି କର୍ମପଥର ପଥିକ ହୋଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା । ତେଣୁ ସେ ଯଥାର୍ଥରେ ଗାଇଛନ୍ତି—

"ମହାତ୍ମା ସାଧନ ମହାତ୍ମା କଥନ
ନଯାଏ ଜଗତେ କେବେ ଅକାରଣ ।
ଅନ୍ୟାୟ, ଅଧର୍ମ, ପାପ, ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର ।
ଏ ବିଶ୍ୱାସେ ସର୍ବେ ଦୃଢ଼କରି ମନ
ସ୍ୱରାଜ୍ୟ ଧରମ କର ଆଚରଣ ।

× × ×

ଛାଡ଼ି ତେବେ ମନୁ ଭେଦ ଅଭିମାନ
ବେଦ, କୋରାନରେ କର ସମ ଜ୍ଞାନ ।
ଏକତା ମନ୍ତ୍ରର ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।

ସମାଜ-ସଂସ୍କାରକ କବି ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କ ପରି ସତ୍ୟାନୁସନ୍ଧିତ୍ସୁ ଏବଂ ଭଗବତ୍ ପ୍ରେମୀ ଥିଲେ । ଏକନିଷ୍ଠ ଧର୍ମବିଶ୍ୱାସ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ତେଣୁ କର୍ମମୟ ଜୀବନର ଆରମ୍ଭଠାରୁ ଶେଷ ଯାଏଁ ସେ ଅଚଳ ଅଟଳ ଧର୍ମବିଶ୍ୱାସ ରଖି ରାଜନୈତିକ ଆନ୍ଦୋଳନକୁ ଗୋଟିଏ 'ଧର୍ମନାବ' ରୂପେ ଚିତ୍ରଣ କରି ଆନନ୍ଦରେ ଗାଇ ଯାଇଛନ୍ତି –

"ନ ଅଟକେ କର୍ମ ନେତାର ଅଭାବେ
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।"

ଏହି ଚିନ୍ତା, ଏହି ଆଦର୍ଶ ଏବଂ ଏହି ଧର୍ମଧାରଣା ହିଁ କବି ଗୋପବନ୍ଧୁଙ୍କ ମୌଳିକତାକୁ ବଜାୟ ରଖିଛି ଏବଂ ମାନବ ପ୍ରେମ ପରିଶେଷରେ ବିଶ୍ୱପ୍ରେମରେ ପରିଣତ ହୋଇପାରିଛି । ଏହା ହିଁ ଗୋପ ସାହିତ୍ୟର ସର୍ବଶ୍ରେଷ୍ଠ ଅର୍ଘ୍ୟାସ । ଗୋପବନ୍ଧୁ ଯଥାର୍ଥରେ ଜଣେ ଜାତୀୟତାବାଦୀ କବି ଏବଂ ତାଙ୍କ ସାହିତ୍ୟ ଏକ ସାର୍ଥକ ଜାତୀୟ ସାହିତ୍ୟ ।



# ଐତିହାସିକ ଉପନ୍ୟାସ 'ଅନ୍ନପୂର୍ଣ୍ଣା'

ସ୍ୱର୍ଗୀୟ ତାରିଣୀଚରଣ ରଥ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସୁପରିଚିତ । ସେ ଥିଲେ ଏକାଧାରରେ ଗବେଷକ, ଐତିହାସିକ ଏବଂ ଜଣେ ଜାତୀୟତାବାଦୀ ସାହିତ୍ୟିକ । ସେ ଗଞ୍ଜାମର ପ୍ରସିଦ୍ଧ ରଥବଂଶରେ ଜନ୍ମଲାଭ କରି ମାନ୍ଦ୍ରାଜରେ ଉଚ୍ଚଶିକ୍ଷା ପାଇ ତତ୍କାଳୀନ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ବହୁର ବିଭାଗ କର୍ମବ୍ୟସ୍ତ ଥିଲେ । କର୍ମମୟ ଜୀବନର ନାନା ଜଞ୍ଜାଳ ଓ ଘାତ ପ୍ରତିଘାତ ମଧ୍ୟରେ ସେ ସାହିତ୍ୟ ସାଧନାକୁ ଜୀବନର ଏକ ପ୍ରଧାନ ବ୍ରତରୂପେ ଗ୍ରହଣ କରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସୁପ୍ରତିଷ୍ଠା ପାଇଁ ମନ ପ୍ରାଣ ଢାଳିଥିଲେ ।

ଇଂରେଜ କବି କୀଟସ୍ (Keats)ଙ୍କ ପରି ତରୁଣ ବୟସରେ ଏହି ଧୂଳିଧୂସରିତ ଧରିତ୍ରୀରୁ ସେ ବିଦାୟ ନେଇଥିଲେ ସୁଦ୍ଧା ଜଣେ ନିଷ୍ଠାପର ସ୍ରଷ୍ଟା ହିସାବରେ ସେ ଯାହା ସୃଷ୍ଟି କରିଅଛନ୍ତି ତାହା ଓଡ଼ିଆ ସାରସ୍ୱତ ଭଣ୍ଡାରର ଏକ ଶାଶ୍ୱତ ସମ୍ପଦ । ଉତ୍କଳ ସାହିତ୍ୟର ଇତିହାସ ରଚନା ଦିଗରେ ତାରିଣୀଚରଣ ହେଉଛନ୍ତି ପ୍ରଥମ ପଥପ୍ରଦର୍ଶକ । ଉତ୍କଳ ସାହିତ୍ୟର ଖଣ୍ଡେ ବୃହତ୍ ଇତିହାସ ଲେଖିବା ପାଇଁ ତାଙ୍କର ଆନ୍ତରିକ ଅଭିଳାଷ ଥିଲା; କିନ୍ତୁ ଅବସ୍ଥାଚକ୍ରରେ ପଡ଼ି ବାଧ୍ୟ ହୋଇ ଖଣ୍ଡେ ଟେଷ୍ଟ ବହି ପ୍ରକାଶ କରିଥିଲେ ତା ୧୩।୭।୧୯୧୬ ମସିହାରେ । ସେ ନିଜେ 'ଉତ୍କଳ ସାହିତ୍ୟର ଇତିହାସ' ବହିର ପ୍ରଥମ ସଂସ୍କରଣ ଭୂମିକାରେ ଉଲ୍ଲେଖ କରିଅଛନ୍ତି— "ଏହି କ୍ଷୁଦ୍ର ଇତିହାସଟି ପ୍ରାୟ ଦୁଇ ବର୍ଷ ପୂର୍ବେ ଏକ ପ୍ରବନ୍ଧ ଆକାରରେ ମାତ୍ର ଲିଖିତ ହୋଇଥିଲା । ଉତ୍କଳ ସାହିତ୍ୟର ଖଣ୍ଡିଏ ବୃହତ୍ ଇତିହାସ ପ୍ରକାଶ ପାଇବା ନିମନ୍ତେ ବୋଧହୁଏ ଆହୁରି କେତେ କାଳ ଲାଗିବ । ଏଣୁ ପ୍ରବନ୍ଧଟି ଆବଶ୍ୟକ ପରିବର୍ତ୍ତନ ସହିତ ପୁସ୍ତକାକାରରେ ପ୍ରକାଶ କରିବାକୁ ମୁଁ ସାହସୀ ହେଲି । ସାଧାରଣ ଛାତ୍ରମାନଙ୍କର ଏହା ଉପଯୋଗୀ ହେବ ବୋଲି

ବର୍ଣ୍ଣିତ କରେଁ ।" (୧) ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଓଡ଼ିଆ ଭାଷାରେ ସେ ସର୍ବପ୍ରଥମେ ଓଡ଼ିଆ ସାହିତ୍ୟର ଇତିହାସ ରଚନା କରିଛନ୍ତି ଏବଂ ଏହା ପୂର୍ବରୁ ଓଡ଼ିଆ ଭାଷାରେ ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶ ପାଇ ନଥିଲା ।

ସ୍ୱର୍ଗୀୟ ତାରିଣୀଚରଣଙ୍କ ବହୁମୁଖୀ ପ୍ରତିଭା ଥିଲା । ସେ ଉତ୍କଳ ସାହିତ୍ୟର ଇତିହାସ ବ୍ୟତୀତ ଘୁମୁସର ଇତିହାସ, 'ଋଷିକୁଲ୍ୟା କାହାଣୀ', ଐତିହାସିକ ଉପନ୍ୟାସ 'ଅନ୍ନପୂର୍ଣ୍ଣା' ବହୁ ଆନନ୍ଦପ୍ରଦ ଓ ଶିକ୍ଷାପ୍ରଦ ଗଳ୍ପ ତଥା 'ଶୁଆ ଓ କାଉ କଥା', 'କାଳୀ ପଦ୍ମା କଥା', 'କେରାଣ୍ଡି ମାଛ କଥା', 'କଲରରଙ୍ଗ ଫୁଲ କଥା' ଏବଂ ଅନେକଗୁଡ଼ିଏ ଗବେଷଣାମୂଳକ ତଥା ତଥ୍ୟ ସମ୍ବଳିତ ଉଚ୍ଚକୋଟୀର ପ୍ରବନ୍ଧ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ କରିଥିଲେ । ତତ୍କାଳୀନ ଲବ୍ଧ ପ୍ରତିଷ୍ଠ ପତ୍ରିକା 'ଉତ୍କଳ ସାହିତ୍ୟ'ର ଜଣେ ବିଶିଷ୍ଟ ଲେଖକରୂପେ ସେ ପରିଚିତ ହୋଇଥିଲେ । ଉତ୍କଳ ସାହିତ୍ୟ ସମାଜର ୨୪।୭।୧୯୨୮ ବାର୍ଷିକ ଅଧିବେଶନରେ ତାଙ୍କର ପଠିତ ପ୍ରବନ୍ଧ 'ଦକ୍ଷିଣ ଓଡ଼ିଶା ରାଜ୍ୟ' ପ୍ରଣିଧାନଯୋଗ୍ୟ । ଏହା ଏକ ଗବେଷଣାମୂଳକ ଉପାଦେୟ ପ୍ରବନ୍ଧ । (୨) ତାରିଣୀଚରଣଙ୍କ ପ୍ରତିଭା, ଅଧ୍ୟବସାୟ ଏବଂ ଗବେଷଣାରେ ମୁଗ୍ଧ ହୋଇ ସ୍ୱର୍ଗୀୟ ବିଶ୍ୱନାଥଙ୍କର ଏବଂ ଓଡ଼ିଶାର ତତ୍କାଳୀନ ବହୁ ସାହିତ୍ୟିକ ଏବଂ ଐତିହାସିକ ତାଙ୍କୁ 'ଐତିହାସିକ ତଥ୍ୟ ସଂଗ୍ରହ ସମିତି'ରେ ସଭ୍ୟରୂପେ ଗ୍ରହଣ କରିଥିଲେ । ଏହି ସମିତି ଓଡ଼ିଶାର ଐତିହାସିକ ଅନୁସନ୍ଧାନ ନିମିତ୍ତ ଗଠିତ ହୋଇଥିଲା ଏବଂ ଏଥିର ସଭାପତି ଥିଲେ ବିଦ୍ୟାନିଧି । (୩) ତାରିଣୀଚରଣଙ୍କ ବହୁମୁଖୀ ପ୍ରତିଭା ଅବଶ୍ୟ ସ୍ୱାଗତଯୋଗ୍ୟ, କିନ୍ତୁ ଏହି କ୍ଷୁଦ୍ର ପ୍ରବନ୍ଧରେ ତାହାର ସବିଶେଷ ଆଲୋଚନା ଅସମ୍ଭବ । ଏହି ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ହେଲା ତାଙ୍କ ସ୍ୱରଚିତ ଐତିହାସିକ ଉପନ୍ୟାସ ଅନ୍ନପୂର୍ଣ୍ଣାକୁ ପାଠକ ଆଗରେ ପରିଚୟ କରାଇବା ।

**ଅନ୍ନପୂର୍ଣ୍ଣା**—ବ୍ରହ୍ମପୁର 'ଷ୍ଟୁଡେଣ୍ଟସ୍ ଷ୍ଟୋର୍' ଦ୍ୱାରା ୧୯୩୦ ମସିହାରେ ପ୍ରକାଶିତ । କିନ୍ତୁ ବିଧିର ବିଡ଼ମ୍ବନା ଯେ ବହି ପ୍ରକାଶ ପାଇବା ପୂର୍ବରୁ

---

(୧) 'ଉତ୍କଳ ସାହିତ୍ୟର ଇତିହାସ' ପ୍ରଥମ ସଂସ୍କରଣରେ ଭୂମିକା ୧୩।୭।୧୯୧୬

(୨) 'ଉତ୍କଳ ସାହିତ୍ୟ' ୨୨ଶ ଭାଗ ୬ଷ୍ଠ ସଂଖ୍ୟାରେ ପ୍ରକାଶିତ ।

(୩) 'ଉତ୍କଳ ସାହିତ୍ୟ' ୨୨ଶ ଭାଗ ପ୍ରଥମ ସଂଖ୍ୟା ଦ୍ରଷ୍ଟବ୍ୟ ।

ଲେଖକ ୨୨ ତାରିଖ ଜୁନ୍ ମାସ ୧୯୨୨ ରେ ଇହଧାମ ତ୍ୟାଗ କରିଛନ୍ତି । ତେଣୁ ତାଙ୍କର ସୁପୁତ୍ର ଶ୍ରୀଯୁକ୍ତ ତପିନବିହାରୀ ରଥ (ବର୍ତ୍ତମାନ ଓଡ଼ିଶା ସରକାରଙ୍କ ସେକ୍ରେଟେରୀ) ଯେ ବହି ପ୍ରକାଶ କରାଇ ଅଛନ୍ତି । 'ଅନ୍ନପୂର୍ଣ୍ଣା'ର ଆତ୍ମକଥାରେ ଶ୍ରୀଯୁକ୍ତ ରଥ ଲେଖିଛନ୍ତି—"ଏ ଉପନ୍ୟାସ ଖଣ୍ଡି ମୋର ପିତା ସ୍ୱର୍ଗତ ତାରିଣୀଚରଣ ରଥ, ବି. ଏ.ଙ୍କର ଶେଷ ଲେଖା । ସେ ୧୯୨୨ ମସିହାରେ ଏହାର ପାଣ୍ଡୁଲିପି ଲେଖା ଶେଷକରି ଯଥାଶୀଘ୍ର ପ୍ରକାଶ କରିବା ପାଇଁ ପ୍ରବଳ ଇଚ୍ଛା ପୋଷଣ କରିଥିଲେ । କିନ୍ତୁ ଦୁର୍ଦ୍ଦୈବ ତାଙ୍କୁ ସେ ସୁଯୋଗ ଦେଲା ନାହିଁ । ସେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ବୈଶିଷ୍ଟ୍ୟ ଲାଭକରି ଆସୁଥିଲାବେଳେ କାଳର ଦୁର୍ଦ୍ଧର୍ଷ ହସ୍ତ ତାହାଙ୍କୁ କବଳ କରି ନେଇଛି ଏବଂ ଏଇଠାରେ ହିଁ ତାଙ୍କ ସାହିତ୍ୟ ଚର୍ଚ୍ଚାର ପୂର୍ଣ୍ଣଚ୍ଛେଦ ପଡ଼ିଯାଇଛି ।" ବାସ୍ତବିକ ଶ୍ରୀଯୁକ୍ତ ରଥଙ୍କର ଏହି ଉକ୍ତି ବଡ ବେଦନାଦାୟକ ଏବଂ ମର୍ମନ୍ତୁଦ ପାଠକ ପ୍ରାଣରେ ।

"ଅନ୍ନପୂର୍ଣ୍ଣା, ତୁମେ ଅନ୍ୱେଷିତା ? ନା, ତୁମେ ମୋ ହୃଦୟର ଈଶ୍ୱରୀ, କର୍ମ ଜୀବନର ସହଚରୀ, ପ୍ରେମରାଜ୍ୟର ଅଧୀଶ୍ୱରୀ, ଧର୍ମାନୁଷ୍ଠାନରେ ସହଧର୍ମିଣୀ ।"

"ଦାସୀର ଏ ଭାଗ୍ୟ । ତେବେ କିଙ୍କରୀ ପକ୍ଷେ ଏ ଗୋଟିଏ ନବଯୁଗ ।"

"ଅବଶ୍ୟ—ଅନ୍ନପୂର୍ଣ୍ଣା ଏଣିକି ବୈଷ୍ଣବୀ ନୁହନ୍ତି—ଅତୁଳ ଐଶ୍ୱର୍ଯ୍ୟର ଅଧିକାରିଣୀ, ବିଜୟନଗରର ରାଣୀ ।—ଆସ ଅନ୍ନପୂର୍ଣ୍ଣା—ତୁମେ ଆଜି ତପସ୍ୱିନୀ ନୁହ, ତ୍ୟାଗକର ତୁମ୍ଭର କଷାୟ ବସନ, ଫଳମୂଳାହାର । ଅଚିରେ ବିଜୟନଗରର ଅନ୍ତଃପୁର ତୁମ ପାଇଁ ମୁକ୍ତ ହୋଇଯିବ ।"

"ମହାରାଜଙ୍କର ଯେ ଅଭିରୁଚି ।"

ତଦନନ୍ତର କୃଷ୍ଣଦେବ ରାୟ ନୂତନ ମହିଷୀଙ୍କ ସହିତ କମ୍ପମ୍ ବାସଭବନରେ ଦୁଇଦିନ ଅବସ୍ଥାନ କରି······ବିଜୟନଗର ଅଭିମୁଖେ ଯାତ୍ରା କଲେ । ରାଜ ଦମ୍ପତିଙ୍କ ଆଗମନରେ ବିଜୟନଗର ଅପୂର୍ବ ଶ୍ରୀଧାରଣ କଲା ।" (୪)

(୪) ଅନ୍ନପୂର୍ଣ୍ଣା ଉପନ୍ୟାସର ୮୨ ପୃଷ୍ଠା ଦ୍ରଷ୍ଟବ୍ୟ ।

ଏ ଯେଉଁ ଜଣ୍ଟାଇ ଆଗ୍ରହ ଦଖାଇଥିଲେ, 'ଏଡ୍‌ଗାରକୁ କେନ୍ଦ୍ର କରି ଉପନ୍ୟାସର ବିଷୟବସ୍ତୁ ଗଢି ଉଠିଛି । ମୋଟାଉପରେ 'କଞ୍ଚିକାକୁ ଗଲେ ଓଡ଼ିଶାର ରାଜା ପ୍ରତାପରୁଦ୍ର ଦେବଙ୍କ କନ୍ୟା ଅନ୍ନପୂର୍ଣ୍ଣାଙ୍କ ସହିତ ଦକ୍ଷିଣ ସୀମା ବିଜୟନଗରର ରାଜା କୃଷ୍ଣଦେବ ରାୟଙ୍କ ଶୁଭପରିଣୟ ଅନୁଷ୍ଠିତ ହୋଇଛି । ପ୍ରତାପରୁଦ୍ର ଦେବଙ୍କ ସମୟର ଐତିହାସିକ ପୃଷ୍ଠଭୂମି ଉପରେ ଏହିଭଳି ଏକ ଐତିହାସିକ ରୋମାନ୍‌ସ ଔପନ୍ୟାସିକ ଚାରଣୀଚରଣ ସୃଷ୍ଟି କରିଅଛନ୍ତି । ଏହି ଉପନ୍ୟାସରେ ତାଙ୍କର ଇତିହାସ ପ୍ରୀତି, ବଳିଷ୍ଠ ଐତିହ୍ୟବୋଧ, ଐତିହାସିକ କଳ୍ପନାବୋଧ ଓ ଜାତୀୟତା ପ୍ରତିଫଳିତ ।

ଐତିହାସିକ ଉପନ୍ୟାସରେ ଔପନ୍ୟାସିକ ଐତିହାସିକ ସତ୍ୟତା ରକ୍ଷାକରି ଐତିହାସିକ କଳ୍ପନାବୋଧଦ୍ୱାରା ସମସ୍ତ ଦୃଶ୍ୟ, ଘଟନା ଓ ବ୍ୟକ୍ତିଗତ ଜୀବନକୁ ଜୀବନ୍ତ ଭାବେ ଗଢିବା ଉଚିତ । ଇତିହାସର ସତ୍ୟକୁ ନିଜର କଳ୍ପନା ଜାଲରେ ବିଭ୍ରାନ୍ତ ଓ ବିକୃତ କଲେ ସାର୍ଥକ ଐତିହାସିକ ଉପନ୍ୟାସ ସୃଷ୍ଟି ହେବା ବିଡ଼ମ୍ବନା ମାତ୍ର ଏବଂ କେବଳ ଐତିହାସିକ ସତ୍ୟତା ଉପରେ ଗୁରୁତ୍ୱ ଦେଇ ଯଦି କଳ୍ପନାବୋଧ ଏବଂ ଐତିହାସିକ ରସ ସୃଷ୍ଟି ପ୍ରତି ଧ୍ୟାନ ଦିଆନଯାଏ ତାହାହେଲେ ଐତିହାସିକ ଉପନ୍ୟାସ ବ୍ୟର୍ଥ ହେବା ସୁନିଶ୍ଚିତ । ତେଣୁ ସାର୍ ଯଦୁନାଥ ସରକାର ୧୯୦୫ ରେ ଲଣ୍ଡନରୁ ପ୍ରକାଶିତ 'Times Supplement' ପତ୍ରିକାରେ ଯଥାର୍ଥରେ କହିଛନ୍ତି—"ଇତିହାସ ଏବଂ ଉପନ୍ୟାସ ଏକ ବସ୍ତୁ ନୁହେଁ । ଐତିହାସିକ ଉପନ୍ୟାସର ପ୍ରକୃତ ସ୍ଥାନ ସାହିତ୍ୟର ଶ୍ରେଣୀରେ, ଇତିହାସ ଶ୍ରେଣୀରେ ନୁହେଁ । ଆଜକାଲି ଇଂରେଜୀରେ ଯେଉଁସବୁ ଐତିହାସିକ ଉପନ୍ୟାସ ଲେଖା ଯାଉଛି, ତାହାର ପ୍ରଧାନ ଦୋଷ ଏହି ଯେ, ତାହା ମଧ୍ୟରେ ଅତୀତକାଳର ସତ୍ୟ, ବ୍ୟକ୍ତି ଏବଂ ଘଟନାର ଭାର ଅତିମାତ୍ରାରେ ବଢ଼ିଯାଉଛି ଏବଂ ଗ୍ରନ୍ଥକାରର କଳ୍ପନାର ପ୍ରକୃତ ରସ କ୍ରମେ କ୍ରମେ କମିଯାଉଛି ।" (୫) ଅତଏବ ଇତିହାସର ଅଖଣ୍ଡତା ସହିତ କଳ୍ପନାର ରସାଳ ବଳିଷ୍ଠତା ଐତିହାସିକ ଉପନ୍ୟାସରେ ପ୍ରତିଫଳିତ ହେବା ଉଚିତ ।

---

(୫) ବଙ୍କିମ ଗ୍ରନ୍ଥାବଳୀ : ସାହିତ୍ୟ ସଂସଦ – ପୃ ୨୭
ପୁଣି ପ୍ରକାଶ ପାଇଛି (ସାହିତ୍ୟ ସାଧକ ଫକୀରମୋହନ– ପୃ ୧୯୯)

ତାରିଣୀଚରଣଙ୍କ 'ଅନ୍ନପୂର୍ଣ୍ଣା'ରେ ଐତିହାସିକ ସତ୍ୟତା କେତେ ଦୂର ପ୍ରକାଶ ପାଇଛି ତାହା ପ୍ରଥମେ ଦେଖିବା କଥା । ପ୍ରତାପରୁଦ୍ରଙ୍କ ସମୟର ଯେଉଁ ଘଟଣାକୁ ନେଇ ଉପନ୍ୟାସ ସୃଷ୍ଟି ହୋଇଛି ସେହି ଘଟଣାକୁ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ମଧ୍ୟ ସ୍ୱରଚିତ 'ଓଡ଼ିଶା ଇତିହାସ'ରେ ଲିପିବଦ୍ଧ କରିବାକୁ ଯାଇ ଲେଖିଅଛନ୍ତି, "କୃଷ୍ଣଦେବ ରାୟଙ୍କ ଓଡ଼ିଶା ବିରୋଧରେ ଉପରୋକ୍ତ ଅଭିଯାନମାନଙ୍କ ବିବରଣୀ ନୁନେଜ୍ ନାମକ ପର୍ତ୍ତୁଗୀଜ ଲେଖକଙ୍କଦ୍ୱାରା ଲିପିବଦ୍ଧ ହୋଇଅଛି । ନୁନେଜଙ୍କ ଲେଖାରୁ ଜଣାଯାଏ ଯେ, କୃଷ୍ଣଦେବ ରାୟଙ୍କ ଦ୍ୱାରା ପ୍ରତାପରୁଦ୍ର ହୀନବଳରେ ପରାସ୍ତ ହୋଇ ନିଜ କନ୍ୟାକୁ ତାଙ୍କୁ ସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ଏ କନ୍ୟାଙ୍କ ନାମ ଜଗନ୍ମୋହିନୀ ବା ତୁକ୍କା ଥିଲ ବୋଲି ତେଲୁଗୁ ଓ ତାମିଲ ସାହିତ୍ୟରୁ ମିଳେ । ବିବାହ ପରେ ସ୍ୱାମୀଙ୍କଦ୍ୱାରା ଅନାଦୃତା ହୋଇ ଜଗନ୍ମୋହିନୀ ଚୁଡୁପା ଜିଲ୍ଲାର କମ୍ବମ୍ ନାମକ ସ୍ଥାନରେ ସନ୍ନ୍ୟାସ ଜୀବନ ଯାପନ କରିଥିଲେ ବୋଲି କେତେକ ଜଣାପଡେ । (୬)

କିନ୍ତୁ ନୁନେଜଙ୍କ ଏହି ମତକୁ ଡକ୍ଟର ମହତାବ କିମ୍ବା ତାରିଣୀଚରଣ ଗ୍ରହଣ କରିନାହାନ୍ତି ତେବେ ଉଭୟେ ନୁନେଜଙ୍କ ବିବରଣୀର ଆଂଶିକ ଐତିହାସିକ ସତ୍ୟତା ଉପଲବ୍ଧି କରିଅଛନ୍ତି । ତାରିଣୀଚରଣ 'ଅନ୍ନପୂର୍ଣ୍ଣା'ରେ କୃଷ୍ଣଦେବ ରାୟଙ୍କ ପ୍ରତାପରୁଦ୍ର ଦେବଙ୍କ କନ୍ୟା ସହିତ ପରିଣୟ ହେବା କଥା ଉଲ୍ଲେଖ କରିଅଛନ୍ତି ଏବଂ ଅନ୍ୟ କାରଣରୁ କମ୍ବମ୍ ନାମକ ସ୍ଥାନରେ ପ୍ରତାପରୁଦ୍ର ଦେବଙ୍କ କନ୍ୟା କଷ୍ଟଯାପନ ପାଇଁ ରହିଥିବା କଥା ବର୍ଣ୍ଣନା କରି ଅଛନ୍ତି । ଡ଼: ମହତାବ ନୁନେଜଙ୍କ ବିବରଣୀ ଅପେକ୍ଷା ଶ୍ରୀଯୁକ୍ତ ଏ. କୃଷ୍ଣସ୍ୱାମୀ ଆୟଙ୍ଗାରଙ୍କ 'କୃଷ୍ଣଦେବ ରାୟ' ନାମକ ପୁସ୍ତକରେ ଉଲ୍ଲେଖ ଥିବା ବିବରଣୀକୁ ଅଧିକ ବିଶ୍ୱାସଯୋଗ୍ୟ ରୂପେ ଗ୍ରହଣ କରିଥିବା ମନେହୁଏ । ଶ୍ରୀଯୁକ୍ତ ଆୟଙ୍ଗାର ଲେଖିଛନ୍ତି—"× × × × ଯେତେବେଳେ ତେଲଙ୍ଗା ଅଞ୍ଚଳମାନ ଅଧିକାର କରି କୃଷ୍ଣଦେବ ରାୟ କଳିଙ୍ଗ ଅଞ୍ଚଳ ଅଧିକାର କରିବା ପାଇଁ ମନ ବଳାଇଲେ, ସେତେବେଳେ ସାଳୁ ତିମ୍ମାରସ ତାଙ୍କ ରାଜାଙ୍କୁ ସେ ଦୁଃସାହସରୁ ନିବର୍ତ୍ତାଇ ଥିଲେ । କାରଣ ଓଡ଼ିଶା ରାଜାଙ୍କର ଅଧିନସ୍ଥ ୧୬ ଜଣ ପାତ୍ର ବା ସେନାପତି ଥିଲେ । କିନ୍ତୁ କୃଷ୍ଣଦେବ

(୬) ଓଡ଼ିଶା ଇତିହାସ : ପ୍ରଥମ ଖଣ୍ଡ—ପୃ ୨୭୧

ଏଂପଗମର୍ଣ ନମାନ ସିଂହାଚଳରେ ୧୫୧୬ ମାର୍ଚ୍ଚ ବା ଏପ୍ରିଲରେ ଆସି ପହଞ୍ଚିଲେ । ସେଠାରେ ପ୍ରତାପରୁଦ୍ର ସୈନ୍ୟ ସହିତ ଉପସ୍ଥିତ ଥିଲେ । ଓଡ଼ିଶା ରାଜାଙ୍କ ବଳ ପରାକ୍ରମ ଦେଖି ସାଲୁ ତିମ୍ମାରସ ମନେ କଲେ ଯେ, ଭେଦନୀତି ପ୍ରୟୋଗ ନକଲେ କାର୍ଯ୍ୟ ସିଦ୍ଧି ହୋଇପାରିବ ନାହିଁ । ସେ କୌଶଳ କରି ଓଡ଼ିଶାର ସମସ୍ତ ସେନାଧ୍ୟକ୍ଷମାନଙ୍କୁ ବହୁମୂଲ୍ୟ ରତ୍ନ ସହ ପତ୍ର ପଠାଇଥିଲେ । × × × ମାତ୍ର କୃଷ୍ଣଦେବ ରାୟ ଓଡ଼ିଶା ରାଜାଙ୍କ ବୀରତ୍ୱ ଓ ଉଦାରତା ବୁଝିଥିଲେ । ପ୍ରତାପରୁଦ୍ରଦେବ ଓ କୃଷ୍ଣଦେବ ଦୁହେଁ ଅତି ଭଦ୍ରଭାବରେ ପରସ୍ପର ସହିତ ଦେଖା ସାକ୍ଷାତ କରିଥିଲେ ଓ ଉଭୟଙ୍କ ମଧ୍ୟରେ ସନ୍ଧି ହୋଇଥିଲା ।” (୭)

ଡକ୍ଟର ମହତାବ ଦୃଢ଼ ଭାବେ ଓଡ଼ିଶା ଇତିହାସରେ ଲେଖିଛନ୍ତି, “ଏଥିରୁ ଜଣାପଡ଼େ ଯେ ପ୍ରତାପରୁଦ୍ର ଓ କୃଷ୍ଣଦେବ ରାୟଙ୍କ ମଧ୍ୟରେ ପୂର୍ଣ୍ଣ ସନ୍ଧି ସ୍ଥାପିତ ହୋଇଥିଲା ।” (ପୃ ୨୭୨) ଔପନ୍ୟାସିକ ତାରିଣୀଚରଣ ସର୍ବସାଧାରଣଙ୍କର ହୃଦୟରେ ଜାତୀୟତାବୋଧକୁ ଉଦ୍ଦୀପ୍ତ ରଖିବା ପାଇଁ ଅନ୍ନପୂର୍ଣ୍ଣାରେ ଓଡ଼ିଶାର ଗୌରବମୟ ପରଂପରା ପ୍ରତି ଦୃଷ୍ଟି ଦେଇ ଓଡ଼ିଶା ରାଜା ଓ ପ୍ରଜାଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ଓ କୀର୍ତ୍ତିକଳାପ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଚୈତନ୍ୟ ଭକ୍ତ ପ୍ରତାପରୁଦ୍ର ଦେବଙ୍କ ଉଦାରତା, ସହିଷ୍ଣୁତା ଓ ଦେଶ ପ୍ରେମିକତାର ମହତ୍ତ୍ୱ ପ୍ରତିପାଦନ କରିଅଛନ୍ତି । ‘ଅନ୍ନପୂର୍ଣ୍ଣା’ରେ ପ୍ରତାପରୁଦ୍ର ଦେବଙ୍କ ସହିତ କୃଷ୍ଣଦେବଙ୍କ ସନ୍ଧି ସ୍ଥାପିତ ହୋଇଥିବା କଥା ସେ ଉଲ୍ଲେଖ କରିଛନ୍ତି ସତ, କିନ୍ତୁ ସନ୍ଧି ପ୍ରସ୍ତାବ ପ୍ରଥମେ କୃଷ୍ଣଦେବ ରାୟଙ୍କ ପକ୍ଷରୁ ଆସିଛି । କୃଷ୍ଣଦେବ ରାୟ ନିଜ ମନ୍ତ୍ରୀଙ୍କୁ କହିଛନ୍ତି, “ବର୍ତ୍ତମାନ ଯୁଦ୍ଧ ଚଳାଇ କ୍ଷତିଗ୍ରସ୍ତ ହେବା ମୋର ଇଚ୍ଛା ନୁହେଁ । ବରଂ ଗଜପତିଙ୍କ ସହିତ ସନ୍ଧି ସ୍ଥାପନ କଲେ ମଙ୍ଗଳ ।” (ଅନ୍ନପୂର୍ଣ୍ଣା-ପୃଷ୍ଠା ୪୨) । ମନ୍ତ୍ରୀ ତିମାରାଜ ବି ବହୁ ଆଗରୁ ଓଡ଼ିଆର ବିଚିତ୍ର ରଣକୌଶଳ, ଅମାନୁଷିକ ବଳ ଓ ଉତ୍ସାହ ଜାଣିପାରିଥିଲେ । ତେଣୁ ସନ୍ଧି ଚୁକ୍ତି ପାଇଁ ସେ ବାଟ ଖୋଜୁଥିଲେ । ସେନାପତି ଅଙ୍କୁଶ ଖାଁ ଯେତେ ପ୍ରବର୍ତ୍ତାଇଲେ ବି ତିମାରାଜ ସେଥିରେ ରାଜି ନହୋଇ ପ୍ରଶ୍ନ କରିଛନ୍ତି-“ବର୍ତ୍ତମାନ ଓଡ଼ିଶାଧିପତିଙ୍କ ପିତା ପୁରୁଷୋତ୍ତମ

(୭) ଡ: ମହତାବ—ଓଡ଼ିଶା ଇତିହାସ : ପ୍ରଥମ ଭାଗ – ପୃ ୨୭୧

ଦେବଙ୍କ କାଞ୍ଚି ବିଜୟ ତୁମେ ପ୍ରତ୍ୟକ୍ଷ କରିଛ କି ? ଓଡ଼ିଆର ଅଦମ୍ୟ ଉତ୍ସାହ, ଅମାନୁଷିକ ବଳ, ବିଚିତ୍ର ରଣକୌଶଳ, ଅଲୌକିକ ସୈନ୍ୟ ଗୁଳନା ବିଷୟରେ ତୁମେ କଣ ଜାଣ ? ଚକ୍ଷୁ ପଲକ ମାତ୍ରେ ସମୃଦ୍ଧିଶାଳୀ କାଞ୍ଚି ନଗରୀ ଯେ ଧ୍ୱଂସ ହୋଇଗଲା, କାଞ୍ଚି ରାଜକନ୍ୟା ପଦ୍ମାବତୀ ବନ୍ଦୀ ହୋଇ ଓଡ଼ିଶାକୁ ଆସିଲେ । ଏହି ସମସ୍ତ କାର୍ଯ୍ୟରେ ଓଡ଼ିଆର ବୀରତ୍ୱ କିପରି ଜାଣିପାରୁଛ ?" (ଅନ୍ନପୂର୍ଣ୍ଣା ପୃଷ୍ଠା ୮୮)

ଐତିହାସିକ ଉପନ୍ୟାସରେ ଜାତି ଜାତୀୟତା ପ୍ରକାଶ ପାଇଥାଏ । ତେଣୁ ଜାତୀୟତାବାଦୀ ତାରିଣୀଚରଣ 'ଅନ୍ନପୂର୍ଣ୍ଣା'ର ଛତ୍ରେ ଛତ୍ରେ ଏହିଭଳି ଜାତୀୟତା ଓ ସ୍ୱଦେଶପ୍ରୀତି ପ୍ରକାଶ କରିଅଛନ୍ତି ଏବଂ ଉତ୍କଳର ସାମାଜିକତା ପ୍ରତି ମଧ୍ୟ ଧ୍ୟାନ ଦେଇଛନ୍ତି । ଡକ୍ଟର ମହତାବ ରାଜକନ୍ୟାଙ୍କ ନାମକରଣ ଏବଂ ପ୍ରତାପରୁଦ୍ରଙ୍କ କନ୍ୟାଦାନ ବିଷୟରେ ସନ୍ଦେହ ପ୍ରକାଶ କରିଅଛନ୍ତି । ସେ ଏସବୁ ଘଟଣାକୁ କିମ୍ବଦନ୍ତୀରୂପେ ଗ୍ରହଣ କରିଛନ୍ତି । ଡକ୍ଟର ମହତାବ ତାଙ୍କ ଇତିହାସରେ ଲେଖିଛନ୍ତି—"ଏଠାରେ ଆଉ ଏକ କିମ୍ବଦନ୍ତୀ ସୃଷ୍ଟି ହୋଇଛି । ପ୍ରତାପରୁଦ୍ର ନିଜ କନ୍ୟାକୁ କୃଷ୍ଣଦେବ ରାୟଙ୍କୁ ଦାନ କରିଥିଲେ ବୋଲି କଥିତ ଅଛି । ଏ କନ୍ୟାଙ୍କ ନାମ ଭିନ୍ନ ଭିନ୍ନ ସାହିତ୍ୟରେ ଭିନ୍ନ ଭିନ୍ନ ପ୍ରକାର ଦିଆହୋଇଛି । × × × ଏହା ହୋଇପାରେ ଯେ, ପୁରୁଷୋତ୍ତମ ଦେବଙ୍କ କାଞ୍ଚି ରାଜକନ୍ୟା ବିବାହ ସମ୍ବନ୍ଧରେ ଯେଉଁ କାବ୍ୟ ସୃଷ୍ଟି ହୋଇଥିଲା, ତାର ବଦଳ ସ୍ୱରୂପ କୃଷ୍ଣଦେବ ରାୟଙ୍କ ଓଡ଼ିଶା ରାଜକନ୍ୟାଙ୍କ ପାଣିଗ୍ରହଣରେ ସୃଷ୍ଟି । ଯାହାହେଉ ରାଜକନ୍ୟାଙ୍କ ନାମ ଦିଆହୋଇଛି, ତାହା ଓଡ଼ିଆ ଭାଷାରେ ନୁହେଁ । ଖୁବ୍ ସମ୍ଭବ ଏ ବ୍ୟାପାରଟି କିମ୍ବଦନ୍ତୀ-ମୂଳକ ।" (୮) 'ଅନ୍ନପୂର୍ଣ୍ଣା' ଉପନ୍ୟାସର ନବମ ପରିଚ୍ଛେଦ (ପୃ ୨୫)ରେ ତାରିଣୀଚରଣ ଲେଖିଛନ୍ତି, "ଅନ୍ନପୂର୍ଣ୍ଣାଙ୍କ ଡାକ ନାମ ଅନୁ । ପିତାମାତା ଅତି ସ୍ନେହରେ 'ତୁକା' ବୋଲି ମଧ୍ୟ ଡାକଥାନ୍ତି ।" ତେଲୁଗୁ ଓ ତାମିଲ ସାହିତ୍ୟରେ 'ତୁକା' ନାମ ଥିବା କଥା ପୂର୍ବବର୍ତ୍ତୀ ଐତିହାସିକମାନେ କହିଅଛନ୍ତି ଏବଂ ସେହି ଦୃଷ୍ଟିରୁ ବୋଧହୁଏ ଲେଖକ 'ତୁକା' ନାମକୁ ବି ଗ୍ରହଣ କରିଅଛନ୍ତି । କିନ୍ତୁ ଅନ୍ନପୂର୍ଣ୍ଣା ନାମଟି ତାଙ୍କର ନିଜସ୍ୱ ପରି ମନେହୁଏ ।

(୮) ଓଡ଼ିଶା ଇତିହାସ ; ପ୍ରଥମ ଖଣ୍ଡ—ପୃ ୨୭୨

ରାଜକୁମାରୀଙ୍କର ରୂପ, ଗୁଣ, ବିଦ୍ୟା, ବୁଦ୍ଧି, ଆଗ୍ରହ ଓ ବ୍ୟବହାର ସମ୍ପର୍କରେ ତାରିଣୀଚରଣ ଯେଉଁ ସୂଚନା ଦେଇଛନ୍ତି ନବମ, ଷୋଡ଼ଶ ଓ ଅଷ୍ଟାବିଂଶ ପରିଚ୍ଛେଦାବଳୀରେ ବାସ୍ତବିକ ତାହା ପାଠ କଲେ ପାଠକ ସ୍ୱତଃ ଅନ୍ନପୂର୍ଣ୍ଣା ନାମକରଣର ଯଥାର୍ଥତା ଉପଲବ୍ଧି କରିପାରିବ ।

'ଅନ୍ନପୂର୍ଣ୍ଣା' ଐତିହାସିକ ଉପନ୍ୟାସ ହେଲେ ବି ଲେଖକ ଐତିହାସିକ ତଥ୍ୟରେ ଉପନ୍ୟାସକୁ ଭାରାକ୍ରାନ୍ତ କରିନାହାନ୍ତି । ପାଠକ ପ୍ରାଣରେ ଆନନ୍ଦ ସଞ୍ଚାର କଲାଭଳି ବହୁ ଘଟଣାର ଅବତାରଣା କରାଯାଇଛି । କିନ୍ତୁ ଏହି ଉପନ୍ୟାସରେ ତାରିଣୀଚରଣ ବାସ୍ତବତାର ନଗ୍ନରୂପ ପ୍ରକାଶ କରିବାକୁ ସଙ୍କୁଚିତ ହୋଇ ଏକ ସ୍ୱପ୍ନ ବୃତ୍ତାନ୍ତର ଆଶ୍ରୟ ନେଇଛନ୍ତି । "କଣ କହିବି ମା' ସେ କଥା—ଏବେ ସୁଦ୍ଧା ମନେ ପଡ଼ିଲେ ରୋମ ଟାଙ୍କୁରି ଉଠୁଛି । ଆପାଦମସ୍ତକ ଥରିଯାଉଛି । ଜଣେ ବୀର ପୁରୁଷ ଶାଣିତ କୃପାଣ ହସ୍ତରେ ମୋର ଅନୁସରଣ କରୁଛନ୍ତି । ଆଜ୍ଞା ମୁଁ ପ୍ରାଣରକ୍ଷା କରିବା ଲାଗି କେତେ ନଦୀ, ପର୍ବତ, ପ୍ରାନ୍ତର, ଉଦ୍ୟାନ, ଶସ୍ୟକ୍ଷେତ୍ର ଅତିକ୍ରମ କରି ଚାଲିଛି । ଅନେକ ପଥ ଅଗ୍ରସର ହେବା ପରେ ଦେଖିଲି, ଆଉ ସେହି ବୀର ପୁରୁଷ ନାହାନ୍ତି । ଜଣେ ଅପରିଚିତ ଦୀର୍ଘକାୟ ଯୁବା ପୁରୁଷ ମୋ ଗଳାରେ ଗୋଟିଏ ମନୋହର ସୁବାସିତ ପୁଷ୍ପହାର ଲମ୍ବାଇ ଦେଉଛନ୍ତି । ଏ କଣ ମା' ମଙ୍ଗଳ କି ଅମଙ୍ଗଳ ?" (ପଞ୍ଚମ ପରିଚ୍ଛେଦ, ପୃଷ୍ଠା ୮୩) । ଏହିଭଳି ବର୍ଣ୍ଣନା ଅବାସ୍ତବ ହେଲେ ବି ରୋମାଣ୍ଟିକ ପରିବେଶ ସୃଷ୍ଟି କରିବା ପାଇଁ ଓଡ଼ିଆ ସାହିତ୍ୟରେ ବହୁ ଆଗରୁ କବିମାନେ ଅତିମାନୁଷ ସ୍ୱପ୍ନବୃତ୍ତାନ୍ତର ଆଶ୍ରୟ ନେଇଛନ୍ତି । ରାଧାନାଥଙ୍କ 'ଉଷା', 'ପାର୍ବତୀ' ଏବଂ ପଣ୍ଡିତ ନୀଳକଣ୍ଠଙ୍କ 'ମାୟାଦେବୀ' ପ୍ରଣିଧାନଯୋଗ୍ୟ । ତାରିଣୀଚରଣ ବୋଧହୁଏ ଏହି ଦୃଷ୍ଟିରୁ ସ୍ୱପ୍ନିଳ ଘଟଣାକୁ ଉପନ୍ୟାସରେ ସ୍ଥାନ ଦେଇଛନ୍ତି । ଐତିହାସିକ ଉପନ୍ୟାସ 'ତପସ୍ୱିନୀ' କନ୍ୟା ପଦ୍ମମାଳୀରେ ଯେଉଁଭଳି ଅନ୍ତରଞ୍ଜିତ ଏବଂ ଅବାସ୍ତବ ଘଟଣାର ବର୍ଣ୍ଣନା ରହିଛି ସ୍ଥଳବିଶେଷରେ ସେହିଭଳି କୌଣସି ଅବାସ୍ତବ ବର୍ଣ୍ଣନା ଅନ୍ନପୂର୍ଣ୍ଣା'ରେ ନାହିଁ । ଅନ୍ନପୂର୍ଣ୍ଣା ଏକ ସୁନ୍ଦର, ସରସ ଉପନ୍ୟାସ । ଏଥିରେ ଅବଶ୍ୟ ଐତିହାସିକ କଳ୍ପନାବୋଧ ଅଛି କିନ୍ତୁ ସେହି କଳ୍ପନାବୋଧ ନିର୍ଜୀବ କିମ୍ବା ନିଷ୍କ୍ରିୟ ନୁହେଁ । ପାଠକର ମନ ପ୍ରାଣକୁ ଟାଣିନେବା ଭଳି ଶକ୍ତି ତାର ନିକଟରେ ରହିଛି । ଭାଷା ଓ ଭାବ ଉଭୟ ଦୃଷ୍ଟିରୁ ବିଚାର କଲେ

ଜଣାପାଏ 'ଅନ୍ନପୂର୍ଣ୍ଣା'ର କଳାଗତ ସୌନ୍ଦର୍ଯ୍ୟ ଯେତିକ ରହିଛି ସାହିତ୍ୟିକ ମୂଲ୍ୟ ସେତିକ ରହିଛି । ଏହାର ସତ୍ୟତା କେବଳ ଗୋଟିଏ ଦୃଷ୍ଟାନ୍ତରୁ ସହଜେ ଅନୁମେୟ । "ଯୁଦ୍ଧଯାତ୍ରୀଙ୍କୁ ବରଯାତ୍ରୀ ରୂପେ ବରଣ କରିବା କଣ ଉଚିତ ?"

"କାହିଁକ ମା', ସେଥିରେ ଦୋଷ କଣ ?"

"ଯେଉଁଠାରେ ହିଂସା ପ୍ରାଣୋଦ୍ଦୀପ୍ତ ତରବାରିର ବ୍ୟବହାର କରାଯାଉଛି, ସେହିଠାରେ ପବିତ୍ର ପ୍ରେମବନ୍ଧନ ସମ୍ଭବପର ତ ପିତା ?"

"ମା' ମୋର, ତୋତେ କଣ ଅଧିକ ବୁଝାଇବାକୁ ହେବ ? ତୀକ୍ଷ୍ଣ କଣ୍ଟକ ଜାଲ ମଧ୍ୟରେ କେତକୀ, ଜଟିଳ ଶୈବାଳ ଦଳ ମଧ୍ୟରେ ମନୋରମ ପଦ୍ମ, ବିଷଧର ମଧ୍ୟରେ ସୁରଭିଯୁକ୍ତ ଚନ୍ଦନ ଯେ ବିଦ୍ୟମାନ ।"

"ଏହା ତ ପ୍ରଭୁଙ୍କର ସେହି ଅଦ୍ଭୁତ ସୃଷ୍ଟିକ୍ରିୟା ।" (ପୃଷ୍ଠା ୫୬)

କାଳ୍ପନିକତାବୋଧର ଉଦ୍ଦୀପନା ଏବଂ ମନୋଜ୍ଞ ତଥା ରସାଳ ପରିକଳ୍ପନା ଅନ୍ନପୂର୍ଣ୍ଣା ଉପନ୍ୟାସରେ ଦେଖିବାକୁ ମିଳେ । ଯଥାର୍ଥରେ କହିବାକୁ ଗଲେ 'ଅନ୍ନପୂର୍ଣ୍ଣା'ରେ ଇତିହାସ ଓ ଐତିହାସିକ ରସର ମଣିକାଞ୍ଚନ ସଂଯୋଗ ଘଟିଛି ଏବଂ ଓଡ଼ିଆ ଐତିହାସିକ ରୋମାନ୍ସ ହିସାବରେ ତାରିଣୀଚରଣଙ୍କର ଏହା ଶ୍ରେଷ୍ଠ କୃତି ।



ବ୍ରହ୍ମପୁର ସ୍ୱାଧୀନ ପ୍ରେସ୍‌ରେ ଶ୍ରୀ ରାମଚରଣ ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ, ୧୯୭୧ ।